ମଣିଷମାନଙ୍କର ସ୍ୱାର୍ଥର ସୁରକ୍ଷାକାରୀ । ଯାହାଫଳରେ ଶିକ୍ଷିତ ଶ୍ରେଣୀ ତା'ର ବହୁଳ ଅପବ୍ୟବହାର କରି ନିଜର ପୁଷ୍ଟିସାଧନରେ ବ୍ରତୀ । ସ୍ୱାମୀଜୀ ଏହି ଚିନ୍ତାଧାରାକୁ ପରିବର୍ତ୍ତନ କରି ଦେଇଛନ୍ତି । ସେ ବାରମ୍ବାର ଉଦ୍‌ଘୋଷଣା କରି କହିଛନ୍ତି ଯେ ସାଧାରଣ ମଣିଷମାନେ ହେଉଛନ୍ତି ଏ ଜାତିର ମେରୁଦଣ୍ଡ । ସେମାନଙ୍କ ନିକଟରେ ସମସ୍ତ ଶକ୍ତି ନିହିତ ଅଛି । ଜନଗଣଙ୍କ ପ୍ରକୃତ ଶକ୍ତି ସମ୍ପର୍କରେ ସେ ଉଲ୍ଲେଖ କରିଛନ୍ତି । ଯଦିଓ ସମାଜର ନେତୃତ୍ୱ କେତେକ ଶିକ୍ଷିତ ବ୍ୟକ୍ତିମାନଙ୍କ ହାତରେ, ଧନୀମାନଙ୍କ ହାତରେ ରହିଛି ଯେଉଁମାନେ କ୍ଷମତାକୁ ସମ୍ପୂର୍ଣ୍ଣ ଉପଭୋଗ କରୁଛନ୍ତି କିନ୍ତୁ ବାସ୍ତବରେ ଏହି ଶକ୍ତି ରହିଛି ଶାସିତ ହେଉଥିବା ସାଧାରଣ ମଣିଷମାନଙ୍କ ହାତରେ । ଯେହେତୁ ଶାସକଶ୍ରେଣୀ ଶାସିତ ଜନଗଣଙ୍କ ଠାରୁ ଦୂରେଇ ଯାଇଛନ୍ତି, ଫଳରେ ଶାସନ ବ୍ୟବସ୍ଥାରେ ଦୁର୍ବଳତା ପ୍ରକାଶ ପାଉଛି । ଶାସକଶ୍ରେଣୀ ଯେଉଁମାନଙ୍କ ଠାରୁ କ୍ଷମତା ହାସଲ କରିଛନ୍ତି, ସେମାନଙ୍କୁ ଭୁଲି ଯାଇଛନ୍ତି । ଏହାହିଁ ବିଡମ୍ବନା । ଶାସକ ଶ୍ରେଣୀ ଛଳନା, ପ୍ରବଞ୍ଚନା, ଶକ୍ତି ପ୍ରୟୋଗ କରି ଶାସନ କ୍ଷମତାକୁ ଅକ୍ତିଆର କରିଛନ୍ତି ।

ଇତିହାସ ପ୍ରତି ଦୃଷ୍ଟିନିକ୍ଷେପ କରି ସ୍ୱାମୀଜୀ କହିଛନ୍ତି, ପୌରୋହିତ୍ୟବାଦ ଭୁଶୁଡ଼ି ପଡିବା ଫଳରେ ରାଜା ରାଜୁଡାମାନେ ଗଣଶକ୍ତିର ସାହାଯ୍ୟରେ ଶାସନ କ୍ଷମତାକୁ ଜାବୋଡ଼ି ବସିଲେ । ସମୟ କ୍ରମେ ଏହି ରାଜଶାସନ ଲୋକମାନଙ୍କଠାରୁ ଦୂରେଇଯାଇ ନିଜକୁ ସମ୍ପୂର୍ଣ୍ଣ ଭାବେ ସ୍ୱାଧୀନ ଭାବେ ବିଚାର କଲେ ଏବଂ ଅଖଣ୍ଡ କ୍ଷମତା ଭୋଗ କରିବାକୁ ଲାଗିଲେ । ଯାହାର ପରିଣତି ହେଲା ରାଜାରାଜୁଡା ଶାସନ ବ୍ୟବସାୟୀ ବା ପୁଞ୍ଜିପତିଙ୍କର କ୍ରୀଡ଼ନକ ପାଲଟିଗଲେ । ଭାରତରେ ଏହାହିଁ ଘଟିଛି । ଜନଗଣଙ୍କର କ୍ଷମତା ସଙ୍କୁଚିତ କରି ରାଜାରାଜୁଡା ଶାସନ ଓ ପରବର୍ତ୍ତୀ ସମୟରେ ବ୍ରିଟିଶ୍ ଦ୍ୱାରା ଦେଶ ଶାସନ ହୋଇ ପରାଧୀନ ହୋଇଯାଇଛି । ପୁଞ୍ଜିପତି ଶାସନର ମଧ୍ୟ ଅବସାନ ଘଟିଛି । ଜନଶକ୍ତିକୁ ପ୍ରତିହତ କରି ନିରଙ୍କୁଶ ଶାସନ ବ୍ୟବସ୍ଥା ବେଶୀ ଦିନ ତିଷ୍ଠି ପାରି ନାହିଁ ବା ପାରିବ ନାହିଁ ।

୧୮୯୭ ମସିହାରେ ଅଲମୋଡାଠାରେ ଅବସ୍ଥାନ ସମୟରେ ସ୍ୱାମୀଜୀଙ୍କର ଅଶ୍ୱିନୀକୁମାର ଦତ୍ତଙ୍କ ସହିତ ଆଲୋଚନା ବେଶ୍ ପ୍ରଣିଧାନ ଯୋଗ୍ୟ । ଅଶ୍ୱିନୀକୁମାର ଭାରତୀୟ ଜାତୀୟ କଂଗ୍ରେସର ପ୍ରମୁଖ ନେତା ଥିଲେ । ସେହି ବୈଠକରେ ସ୍ୱାମୀଜୀ କଂଗ୍ରେସ ମଧ୍ୟରେ ସାଧାରଣ ଲୋକମାନଙ୍କର ଯୋଗଦାନ ଉପରେ ଗୁରୁତ୍ୱ ଆରୋପ କରିଥିଲେ କାରଣ ସେ ପର୍ଯ୍ୟନ୍ତ କଂଗ୍ରେସ କେତେକ ମୁଷ୍ଟିମେୟ ଶିକ୍ଷିତଗୋଷ୍ଠୀ ମଧ୍ୟରେ ସୀମାବଦ୍ଧ ଥିଲା । ବାସ୍ତବରେ କହିଲେ ୧୯୨୦ ମସିହା ପରେ ଗାନ୍ଧିଜୀଙ୍କର କଂଗ୍ରେସରେ ଯୋଗଦାନ ହେତୁ ସାଧାରଣ ଜନଗଣ କଂଗ୍ରେସ ମଧ୍ୟ ରେ ସକ୍ରିୟ ଅଂଶଗ୍ରହଣ କଲେ । ଡିସେମ୍ବର ୧୮୯୭ରେ ଆମରୋଟି କଂଗ୍ରେସ ଅଧିବେଶନରେ ଅଶ୍ୱିନୀ କୁମାର କଂଗ୍ରେସକୁ ସମାଲୋଚନା କରି ଏହା 'ବାର୍ଷିକ ତାମସା' କରୁଥିବାର ଉଲ୍ଲେଖ କରିଥିଲେ ।

ସ୍ୱାମୀଜୀ କେବଳ ଜନଗଣଙ୍କୁ ରାଜନୈତିକ ବା ଶାସନ ପ୍ରକ୍ରିୟାରେ ସାମିଲ କରିବା ଉପରେ ଗୁରୁତ୍ୱ ଦେଇନଥିଲେ । ସେଥି ମଧ୍ୟରୁ ଜନ୍ମଲାଭ କରିଥିଲା ତାଙ୍କର ଯୁଗାନ୍ତକାରୀ ବିଚାର ସାମ୍ୟବାଦ । ସ୍ୱାମୀଜୀଙ୍କର ସାମ୍ୟବାଦୀ ବିଚାରରେ ଅନେକ ମୌଳିକତା ପରିଲକ୍ଷିତ ହୁଏ । ଯଥା –

କ) ବିବେକାନନ୍ଦ ପ୍ରଥମେ ଭାରତୀୟ ନେତୃବର୍ଗଙ୍କ ସମ୍ମୁଖରେ ଜନଗଣଙ୍କର ଦାରିଦ୍ର୍ୟର ସ୍ୱରୂପକୁ ଉନ୍ମୋଚନ କଲେ । ଦେଶରେ କୋଟି କୋଟି ଲୋକ ଭୋକିଲା ଥିବାବେଳେ ରାଷ୍ଟ୍ରର ନବଜାଗରଣ ହେବା ଅସମ୍ଭବ । ତେଣୁ ପ୍ରଥମେ ଏହି ନିରନ୍ନ ଲୋକମାନଙ୍କୁ ସେଥିରୁ ମୁକ୍ତ କରିବାକୁ ହେବ । ଜାତୀୟ ଅଭ୍ୟୁତ୍ଥାନ ପାଇଁ ପ୍ରଥମେ ଲୋଡା ଗରିବମାନଙ୍କ ପାଇଁ ଖାଦ୍ୟ । ତେଣୁ ସଂଗଠିତ ଓ ସମୟଭିତ୍ତିକ ନିର୍ଦ୍ଦିଷ୍ଟ କାର୍ଯ୍ୟକ୍ରମ ପ୍ରଥମେ ନେବା ଉପରେ ସେ ଦେଇଥିଲେ ଗୁରୁତ୍ୱ ।

ଖ) ଊନବିଂଶ ଶତାବ୍ଦୀରେ ସରକାର ବିରୁଦ୍ଧରେ କୃଷକମାନଙ୍କ ମଧ୍ୟରେ ବ୍ୟାପକ ଅସନ୍ତୋଷ ଥିବାର ସେ ଦେଖିବାକୁ ପାଇଥିଲେ । କିନ୍ତୁ କୃଷକମାନଙ୍କର ରାଜନୈତିକ ଆନ୍ଦୋଳନ ବା ସ୍ୱାଧୀନତା ସଂଗ୍ରାମରେ ସେମାନଙ୍କର ଯୋଗଦାନ ସେ ପର୍ଯ୍ୟନ୍ତ ସମ୍ଭବ ହୋଇ ନଥିଲା । ୧୯୩୦ ମସିହାରେ ଚାଷୀମାନେ ଆନ୍ଦୋଳନରେ ସାମିଲ ହେଲେ ।

ଏପରିକି ଶିଳ୍ପରେ କାମ କରୁଥିବା ଶ୍ରମିକମାନେ ମଧ୍ୟ ସଂଗଠିତ ହୋଇ ମାଲିକମାନଙ୍କ ବିରୁଦ୍ଧରେ ଆନ୍ଦୋଳନ କରିବାକୁ ଆରମ୍ଭ କରି ଦେଇଥିଲେ । ବମ୍ବେ, କଲିକତା, ମାନ୍ଦ୍ରାଜଠାରେ ବୟନ ଶିଳ୍ପରେ କାର୍ଯ୍ୟରତ ଶ୍ରମିକମାନେ ଧର୍ମଘଟ କରିଥିଲେ । କିନ୍ତୁ ଏହି ଧର୍ମଘଟ ସୁସଂହତ ଓ ସଂଗଠିତ ନ ଥିଲା । ଏହାଦ୍ୱାରା କୌଣସି ରାଜନୈତିକ ପ୍ରଭାବ ପଡୁନଥିଲା । ପ୍ରଥମ ବିଶ୍ୱଯୁଦ୍ଧ ପରେ ଶ୍ରମିକମାନଙ୍କୁ ଜାତୀୟତାବାଦୀ ଆନ୍ଦୋଳନ ମଧ୍ୟକୁ ପ୍ରବେଶ କରାଇବାକୁ ଚେଷ୍ଟା କରାଯାଇଥିଲା ।

ସ୍ୱାମୀଜୀ ଥିଲେ ଦୂରଦ୍ରଷ୍ଟା । ସେ ଅନୁଭବ କଲେ ଯେକୌଣସି ସାମାଜିକ ଓ ରାଜନୈତିକ ଆନ୍ଦୋଳନ ମଧ୍ୟରେ କୃଷକ ଓ ଶ୍ରମିକ୍‌ମାନଙ୍କୁ ସାମିଲ କରିବାକୁ ହେବ । ସେ ନିଜର ଲେଖା ଓ ବକ୍ତୃତା ମାଧ୍ୟମରେ ଶ୍ରମିକଶ୍ରେଣୀ ପ୍ରତି ଗଭୀର ଆସ୍ଥା ସ୍ଥାପନ କଲେ ଏବଂ ସେମାନଙ୍କର ଉଚ୍ଛ୍ୱସିତ ପ୍ରଶଂସା କଲେ । କେବଳ ସେତିକିରେ ତାଙ୍କର ବିଚାର ସୀମିତ ହେଲାନାହିଁ । ଚାଷ କରୁଥିବା ଚାଷୀମାନଙ୍କୁ ଜମି ଦେବା ଉପରେ ସେ ଦେଲେ ଗୁରୁତ୍ୱ । ବୈଷୟିକ ଜ୍ଞାନର ବିକାଶ ସେତେବେଳକୁ ଆରମ୍ଭ ହୋଇଯାଇଥାଏ । କୃଷିକୁ ଟେକ୍ନୋଲଜି ସହିତ ଯୋଡ଼ିପାରିବା ପାଇଁ କୃଷିକ୍ଷେତ୍ରକୁ ପୁନର୍ଗଠନ ଉପରେ ଥିଲା ତାଙ୍କର ଗୁରୁତ୍ୱ ।

ସେ ଅନୁଭବ କରିଥିଲେ ଯେ ଦିନେ ନା ଦିନେ ନିପୀଡିତ ଜନଗଣ ଉଠିବେ ଏବଂ ରାଷ୍ଟ୍ରର ଶାସନ କ୍ଷମତା ସେମାନଙ୍କ ହାତକୁ ଯିବ । ଥରେ ସେ ଦିବ୍ୟ ଭାବରେ ଥିବା ବେଳେ କହିଥିଲେ, "ପରବର୍ତ୍ତୀ ଉତ୍ଥାନ ଯାହା ଏକ ନୂତନ ସମ୍ଭାବନା ସୃଷ୍ଟି କରିବ, ତାହା ଋଷ୍ ବା ଚୀନ୍‌ରୁ ହେବ । ମୁଁ ହୁଏତ ସଠିକ୍ ଭାବରେ କହିପାରୁନି କେଉଁଠି ପ୍ରଥମେ ହେବ କିନ୍ତୁ ଏହା ନିଶ୍ଚିତ ଭାବରେ ଚୀନ୍ ବା ଋଷ୍" ସ୍ୱାମୀଜୀଙ୍କ ଏହି ଦିବ୍ୟବାଣୀ ଥିଲା ଯେତେବେଳେ ଚୀନ୍ ଏକଛତ୍ରବାଦୀ ଶାସକ ମଞ୍ଚୁ ସମ୍ରାଟଙ୍କ ଅଧିନରେ ଥିଲା ଏବଂ ଋଷ୍ ଯା'ର ଅଧିନରେ ଶାସିତ ହେଉଥିଲା । ସ୍ୱାମୀଜୀ ନିଶ୍ଚିତ ଥିଲେ ଯେ ସାମାଜିକ ବିକାଶ ପ୍ରକ୍ରିୟା ମାଧ୍ୟମରେ ଶୂଦ୍ର ରାଜତ୍ୱହେବ, କିନ୍ତୁ ଏହାର ପ୍ରେରଣା ଶକ୍ତି ମନୁଷ୍ୟ ମଧ୍ୟରେ ଥିବା ଅଫୁରନ୍ତ ଆଧ୍ୟାତ୍ମିକତା ଶକ୍ତି ଯୋଗୁଁ ସମ୍ଭବ ହେବ । ଏହା ସତ୍ତ୍ୱେ ଇତିହାସରେ ଆର୍ଥିକ ଶକ୍ତିର ପ୍ରଭାବ ରହିବ ବୋଲି ମଧ୍ୟ ତାଙ୍କର ବିଚାର ଥିଲା ।

ସ୍ୱାମୀଜୀ ଶ୍ରେଣୀ ସଂଘର୍ଷକୁ ଗ୍ରହଣ କରୁନଥିଲେ । ସେ ଚାହୁଁଥିଲେ ନିମ୍ନତମ ଶ୍ରେଣୀକୁ ଉଚ୍ଚକୁ ଉଠାଇବା ପାଇଁ ସେମାନଙ୍କୁ ଶିକ୍ଷା ସହିତ ସମସ୍ତ ପ୍ରକାର ସାହାଯ୍ୟ ଯୋଗାଇ ଦିଆଯାଉ । ଉଚ୍ଚଶ୍ରେଣୀକୁ ସମୂଳେ ଲୋପକରି ସମାଜ ବ୍ୟବସ୍ଥାରେ ସୁଧାର ଅଣାଯାଇ ପାରିବ ନାହିଁ ବୋଲି ତାଙ୍କର ଥିଲା ମତ । ସ୍ୱାମୀଜୀ ଏଇ ଦୃଷ୍ଟିକୋଣରୁ ମାର୍କ୍ସବାଦ ବିଚାରଠାରୁ ଭିନ୍ନ ମତପୋଷଣ କରିଥିଲେ ।

ସ୍ୱାମୀଜୀଙ୍କର ସାମ୍ୟବାଦ ବିଚାର ଧର୍ମ ସହିତ କୌଣସି ଦ୍ୱନ୍ଦ୍ୱ ରଖୁ ନଥଲେ। । ସେ ବିଶ୍ୱାସ କରୁଥିଲେ ଯେ ଧର୍ମ ହେଉଛି ମନୁଷ୍ୟଜୀବନର ମୌଳିକ ଆବଶ୍ୟକତା । ଧର୍ମ କହିଲେ ସେ ଏହାକୁ ବ୍ୟାପକ ଦୃଷ୍ଟିରୁ ବିଚାର କରୁଥିଲେ । ସାମ୍ୟବାଦ ସମ୍ପର୍କରେ ସେ କହିଥିଲେ, " ହୁଏତ ଏହା ଏକ ପରିପୂର୍ଣ୍ଣ ବ୍ୟବସ୍ଥା ହୋଇନପାରେ, କିନ୍ତୁ ପୂରା ରୋଟି ବଦଳରେ ଅଧଖଣ୍ଡେ ମଧ୍ୟ ଉତ୍ତମ ଅଟେ" । ଏହି ସଂକ୍ଷିପ୍ତ ଆଲୋଚନାରୁ ଆମେ ଦେଖିପାରିବା ଯେ ଯଦିଓ ସ୍ୱାମୀଜୀ ରାଜନୀତି ସହିତ ସମ୍ପର୍କ ରଖି ନ ଥିଲେ କିନ୍ତୁ ତାଙ୍କର ବିଚାର ରାଜନୈତିକ ବ୍ୟକ୍ତିବିଶେଷଙ୍କୁ ବହୁଭାବରେ ଅନୁପ୍ରେରିତ କରିଥିଲା ଏବଂ ସେମାନେ ରାଷ୍ଟ୍ରର ମୁକ୍ତି ସଂଗ୍ରାମରେ ବହୁ ଗୁରୁତ୍ୱପୂର୍ଣ୍ଣ ଭୂମିକା ସମ୍ପାଦନ କରିଥିଲେ ।

ପ୍ଲଟ ନଂ - ୫୦୧୨/୫୮୫୩
ଗଜପତି ନଗର, ଭୁବନେଶ୍ୱର - ୭୫୧୦୦୫



# ସ୍ୱାମୀ ବିବେକାନନ୍ଦ ଓ ଶ୍ରୀ ରାମକୃଷ୍ଣ

*ଡାକ୍ତର କବି ପ୍ରସାଦ ମିଶ୍ର*

୧୧ ସେପ୍ଟେମ୍ବର ୧୮୯୩ ଦିନ ହିନ୍ଦୁଧର୍ମର ପୁନର୍ଜନ୍ମ ଘଟିଲା । ଏ କଥା କହିଥିଲେ ଚିକାଗୋରେ ଅନୁଷ୍ଠିତ ବିରାଟ ଧର୍ମ-ମହାସଭାର ଜଣେ ଅତି ବିଖ୍ୟାତ ପ୍ରତିନିଧି, ବ୍ରାହ୍ମସମାଜର ପ୍ରବକ୍ତା ଓ ପ୍ରତିନିଧି ଶ୍ରୀମତୀ ଆନି ବେସାନ୍ତ ସେଦିନ ସ୍ୱାମୀ ବିବେକାନନ୍ଦଙ୍କ ଅତି କ୍ଷୁଦ୍ର ଅଭିଭାଷଣ ଶୁଣି ଓ ସେଠାରେ ସମଗ୍ର ଶ୍ରୋତାଙ୍କର ପ୍ରତିକ୍ରିୟା ଦେଖି ସେ ଏହି କଥା କହିଥିଲେ ।

ସେ ବାସ୍ତବିକ୍ ଗୋଟିଏ ନିରାଟ ସତ୍ୟ କଥା କହିଥିଲେ । କାରଣ ସ୍ୱାମୀ ବିବେକାନନ୍ଦ ଚିକାଗୋରେ ବକ୍ତୃତା ଦେବା ପୂର୍ବରୁ ସମଗ୍ର ପାଶ୍ଚାତ୍ୟ ଜଗତକୁ ଏବଂ ଅନେକ ଅନ୍ୟ ଧର୍ମାବଲମ୍ବୀ ଲୋକମାନେ ଭାବୁଥିଲେ ଯେ ହିନ୍ଦୁଧର୍ମ ଏକ କୁସଂସ୍କାର, ଅନ୍ଧବିଶ୍ୱାସ ପରିପୂର୍ଣ୍ଣ ପ୍ରାଚୀନତାରେ ବୁଡିଥିବା ଏକ ମୃତ ପ୍ରାୟ ଧର୍ମ । ଆଧୁନିକ ଯୁଗରେ ଏହାର କୌଣସି ଉପଯୋଗିତା ବା ସ୍ଥିତି ନାହିଁ, ମାତ୍ର ସ୍ୱାମୀଜୀଙ୍କ ଓଜସ୍ୱିନୀ ଭାଷା ଓ ମର୍ମସ୍ପର୍ଶୀ ଶୈଳୀରେ ପ୍ରଦତ୍ତ ହିନ୍ଦୁଧର୍ମର ଚିନ୍ତାଧାରା, ତତ୍ତ୍ୱ, ଦର୍ଶନ ଓ ତଥ୍ୟ ଶୁଣିବା ପରେ ସମସ୍ତ ଶ୍ରୋତୃବୃନ୍ଦ ଏବଂ ଧର୍ମ-ମହାସଭାର ପ୍ରତ୍ୟେକ ପ୍ରତିନିଧି ମନ୍ତ୍ର-ମୁଗ୍ଧ ହୋଇଯାଇ ସ୍ୱାମୀଜୀଙ୍କ ପ୍ରଶଂସାରେ ଶତ-ଜିହ୍ୱ ହୋଇଗଲେ । ସମଗ୍ର ଆମେରିକା ଏବଂ ସାରା ପୃଥିବୀରେ ବିଜୁଳି ଭଳି ତାଙ୍କର ଖ୍ୟାତି ବ୍ୟାପିଗଲା । ପ୍ରକୃତରେ ପାରମ୍ପରିକ ରୀତିରେ ପ୍ରତିନିଧି ହୋଇ ନ ଯାଇଥିଲେ ମଧ ମାତ୍ର ୩୦ ବର୍ଷ ବୟସରେ ସ୍ୱାମୀଜୀ ବିଶ୍ୱ-ବିଖ୍ୟାତ ହୋଇଗଲେ ଏବଂ ସନାତନ ହିନ୍ଦୁଧର୍ମର ତତ୍ତ୍ୱ ତଥା ଦର୍ଶନ ଜ୍ଞାନୀ ଏବଂ ପଣ୍ଡିତମାନଙ୍କ ମଧରେ ପୁନଃ ପ୍ରତିଷ୍ଠିତ ହୋଇ ଆମ ଧର୍ମର ଏବଂ ଭାରତ ବର୍ଷର ସମ୍ମାନ ବୃଦ୍ଧି ଏପରି ଘଟଣା ଆଧାତ୍ମିକ ଜଗତରେ ଅତ୍ୟନ୍ତ ବିରଳ ।

ଏହା କିପରି ହେଲା ? ଏଭଳି ଅଭୂତପୂର୍ବ ଘଟଣା କିପରି ଘଟିଲା ? ଏହାର ମୁଖ୍ୟ କାରଣ ଥିଲା ଯୁବକ ବୟସରେ ନାସ୍ତିକ ନରେନ୍ ସନାତନ ଧର୍ମର, ଅଦ୍ୱୈତ ବେଦାନ୍ତର ଜଣେ ଚଳନ୍ତି ବିଗ୍ରହ ଶ୍ରୀ ରାମକୃଷ୍ଣଙ୍କୁ ଭେଟି, ତାଙ୍କଠାରୁ ଶିକ୍ଷା -ଦୀକ୍ଷା ପାଇ ଆସ୍ତିକ ସ୍ୱାମୀ ବିବେକାନନ୍ଦରେ ରୂପାନ୍ତରିତ ହୋଇ, ହିନ୍ଦୁଧର୍ମର ସମସ୍ତ ତତ୍ତ୍ୱର ସାରାଂଶ ବୁଝି ବେଦାନ୍ତ ଦର୍ଶନ ଓ ସନାତନର ଧର୍ମର ସର୍ବୋତ୍ତମ ସର୍ବଶ୍ରେଷ୍ଠ ପ୍ରବକ୍ତା ହୋଇସାରିଥିଲେ । ନରେନଙ୍କର ସମସ୍ତ ଦ୍ୱନ୍ଦ, ସନ୍ଦେହ, ପ୍ରଶ୍ନ ଶ୍ରୀ ରାମକୃଷ୍ଣଙ୍କର ଜୀବନ, କାର୍ଯ୍ୟକଳାପ ଦେଖି ତଥା ଶିକ୍ଷା-ଦୀକ୍ଷାରେ ସମ୍ପୂର୍ଣ୍ଣ ଧ୍ୱଂସ ପାଇଯାଇଥିଲା । ଶ୍ରୀ ରାମକୃଷ୍ଣ ଅତ୍ୟାଧୁନିକ ଶିକ୍ଷିତ ବିବେକାନନ୍ଦଙ୍କ ସମ୍ମୁଖରେ ମହାନ୍ ସନାତନ ଧର୍ମର ସାରତତ୍ତ୍ୱରଏକ ଚଳନ୍ତି ବିଗ୍ରହ ଥିଲେ । ଶ୍ରୀ ରାମକୃଷ୍ଣ ପରମହଂସ ବିବେକାନନ୍ଦଙ୍କୁ ଭାଷଣ ବା ପ୍ରବଚନ ନଦେଇ ପ୍ରତ୍ୟକ୍ଷ ଈଶ୍ୱରାନୁଭୂତି ଦେଇଥିଲେ ଯାହାପରେ ସ୍ୱାମୀଜୀଙ୍କ ଜୀବନରେ ବିରାଟ ପରିବର୍ତ୍ତନ ଘଟିଥିଲା । ତାଙ୍କ ମନରେ ବା ଜୀବନରେ ଆଉ ଶଙ୍କା ବା ସନ୍ଦେହର ଅବକାଶ ରହିଲା ନାହିଁ । ସେ ଶ୍ରୀ ରାମକୃଷ୍ଣଙ୍କର ପଟ୍ଟଶିଷ୍ୟ ହୋଇଗଲେ ଏବଂ

ସ୍ୱାମୀଜୀଙ୍କ ମାଧ୍ୟମରେ ହିନ୍ଦୁଧର୍ମ ପୁନଃ ପ୍ରତିଷ୍ଠିତ ହେଉ ବୋଲି ଶ୍ରୀ ରାମକୃଷ୍ଣ ସ୍ୱାମୀଜୀଙ୍କୁ ନିର୍ଦ୍ଦେଶ ଦେଲେ ।

ବାସ୍ତବରେ ସ୍ୱାମୀ ବିବେକାନନ୍ଦ ଭଗବାନ୍ ବୁଦ୍ଧ ଓ ଆଦି ଶଙ୍କରଙ୍କର ଯେପରିକି ଜଣେ ମିଳିତ ବିଗ୍ରହ ଥିଲେ । ସ୍ୱାମୀଜୀଙ୍କ ଜୀବନରେ ଯେପରି ବୁଦ୍ଧଙ୍କର ହୃଦୟ ଓ ଶଙ୍କରଙ୍କର ଜ୍ଞାନର (ମସ୍ତିଷ୍କ) ସମନ୍ୱୟ ଘଟି ଏକ ସମ୍ପୂର୍ଣ୍ଣ ନୂତନ ଅବତାର ସୃଷ୍ଟି ହୋଇଥିଲା । ବୁଦ୍ଧଙ୍କର କରୁଣା, ଅହିଂସା ମନୋଭାବ ଓ ଜ୍ଞାନ-ଦୀପ୍ତ ଜୀବନ ଦର୍ଶନ ସ୍ୱାମୀଜୀଙ୍କର ଜୀବନରେ ଯେପରି ପ୍ରକାଶ ପାଇଥିଲା ସେହିପରି ତାଙ୍କ ଜୀବନରେ ଶଙ୍କରଙ୍କର ବୈରାଗ୍ୟ, ସନ୍ନ୍ୟାସ, ତର୍କ-ଆଧାରିତ ପ୍ରଚଣ୍ଡ ଜ୍ଞାନ ଓ ଦର୍ଶନ ଅତ୍ୟନ୍ତ ଉତ୍କୃଷ୍ଟ ଭାବରେ ପ୍ରକଟିତ ହୋଇଥିଲା । ଭାରତରେ ଆଧ୍ୟାତ୍ମିକ ଇତିହାସରେ ବୁଦ୍ଧ ଓ ଶଙ୍କରଙ୍କ ଭଳି ଆଦର୍ଶ ଦୁଇ ଅବତାରଙ୍କର ଏକ ବିରଳ ସମନ୍ୱୟ ଘଟିଥିଲା । ସ୍ୱାମୀ ବିବେକାନନ୍ଦଙ୍କର ସର୍ବଦା ଅନୁକରଣୀୟ ମହାନ୍ ଜୀବନରେ ।

ଚିରନ୍ତନ ବେଦାନ୍ତର ବାର୍ତ୍ତାକୁ ସ୍ୱାମୀଜୀ ତାଙ୍କର ଆଧୁନିକ, ବୈଜ୍ଞାନିକ ଓ ତର୍କ-ଆଧାରିତ ଢଙ୍ଗରେ ସବୁଠାରେ ପରିବେଷଣ କରି ବିଶେଷ ଲୋକପ୍ରିୟ ହୋଇଥିଲେ । ବେଦାନ୍ତ ଏବଂ ହିନ୍ଦୁଧର୍ମର ସାରତତ୍ତ୍ୱ ଯେ କେବଳ ଏକ ଭାବନା ବା ଚିନ୍ତାଧାରା ନୁହେଁ ବରଂ ଏହା ଆମ ଜୀବନରେ ପ୍ରତିକ୍ଷେତ୍ରରେ ପ୍ରଯୁଜ୍ୟ ଏକଥା ସ୍ୱାମୀଜୀ ସରଳ ଭାଷାରେ ବୁଝାଇ ଦେଉଥିଲେ । ସେଥିପାଇଁ ସାଧାରଣ ଲୋକମାନଙ୍କଠାରୁ ଆରମ୍ଭ କରି ମ୍ୟାକ୍ସମୁଲାର୍ ଓ ରକଫେଲର୍‌ଙ୍କ ଭଳି ବିଶ୍ୱ ପ୍ରସିଦ୍ଧ ବ୍ୟକ୍ତିମାନେ ମଧ୍ୟ ସ୍ୱାମୀଜୀଙ୍କ ଦ୍ୱାରା ପ୍ରଭାବିତ ହୋଇଥିଲେ । ଏହାର ମୁଖ୍ୟ କାରଣ ଥିଲା ସ୍ୱାମୀଜୀଙ୍କ ଉଚ୍ଚାରଣ ଓ ଆଚରଣରେ କିଛି ବି ପାର୍ଥକ୍ୟ ନ ଥିଲା । ସେ ତାଙ୍କ ଗୁରୁ ପରମହଂସ ଶ୍ରୀ ରାମକୃଷ୍ଣଙ୍କୁ ଦେଖି, ଅତି ନିକଟରୁ ତାଙ୍କର ଆଧ୍ୟାତ୍ମିକ ଜୀବନକୁ ପରୀକ୍ଷା ନିରୀକ୍ଷା କରି ସିଦ୍ଧାନ୍ତରେ ପହଞ୍ଚିଥିଲେ ଯେ ବେଦାନ୍ତ, ଦର୍ଶନ କେବଳ ଏକ ତଥ୍ୟ ବା ତତ୍ତ୍ୱ ନୁହେଁ ବରଂ ବାସ୍ତବ ଜୀବନରେ ପ୍ରଯୁଜ୍ୟ ଏବଂ ଉପାଦେୟ ତାଙ୍କର ଗୁରୁ ଶ୍ରୀ ରାମକୃଷ୍ଣ ପରମହଂସ ନିଶ୍ଚିତଭାବେ ଅଦ୍ୱୈତ ବେଦାନ୍ତର ଚଳନ୍ତି, ମୂର୍ତ୍ତିମନ୍ତ ବିଗ୍ରହ ଥିଲେ ।

ସ୍ୱାମୀଜୀ ସାରା ଜଗତକୁ କ'ଣ ବାର୍ତ୍ତା ଦେଇଥିଲେ ? ସେ କହୁଥିଲେ ଯେ ଆମେ କେବଳ ଶରୀର ସର୍ବସ୍ୱ ନୋହୁଁ । ଆମ ମଧ୍ୟରେ ଏକ ଦିବ୍ୟ ଶକ୍ତି, ଚିରନ୍ତନ ଆତ୍ମା ଲୁକ୍କାୟିତ ହୋଇ ରହିଛି । ସେ ଶାଶ୍ୱତ ଶକ୍ତି ଓ ସ୍ଥିତିକୁ ପ୍ରକଟିତ କରିବା ଆମ ଜୀବନର ଲକ୍ଷ୍ୟ । ଆମ୍ଭେମାନେ ସମସ୍ତେ "ଅମୃତସ୍ୟ ପୁତ୍ରାଃ" । ଦ୍ୱିତୀୟତଃ, ସେ ବେଦାନ୍ତର ସାରତତ୍ତ୍ୱକୁ ସରଳ ଭାଷାରେ ବୁଝାଇ କହୁଥିଲେ କି ସମଗ୍ର ବିଶ୍ୱ ଏକ ମହାନ୍ ଐକ୍ୟ ସୂତ୍ରରେ ବନ୍ଧା । ପରମେଶ୍ୱରହିଁ ଏକମାତ୍ର ସ୍ରଷ୍ଟା ଏବଂ ସେ ଅଣୁ-ପରମାଣୁଠାରୁ ଆରମ୍ଭ କରି ସମଗ୍ର ବିଶ୍ୱରେ ଅଦୃଶ୍ୟ ହେଲେ ହେଁ ସର୍ବତ୍ର ପରିବ୍ୟାପ୍ତ ପରଂବ୍ରହ୍ମ, ପରମେଶ୍ୱରଙ୍କ ଛଡା ଅନ୍ୟ କିଛି ସ୍ଥିତି ନାହିଁ । ପ୍ରକଟତାରେ ବା ପ୍ରକାଶ୍ୟରେ ଭିନ୍ନ ହେଲେହେଁ ମୂଳ ଉପାଦାନରେ ସମସ୍ତେ ଏକ । ଏହି କଥାରେ ସେ ଋଗବେଦର ମହାବାକ୍ୟ "ଏକଂ ସଦ୍ ବି ପ୍ରାଃ ବହୁଧାଃ ବଦନ୍ତିର" ସନ୍ଦେଶକୁ କେବଳ ପ୍ରତିଧ୍ୱନିତ କରୁଥିଲେ ।

ସବୁଠାରୁ ପ୍ରଧାନ କଥା ହେଉଛି ସ୍ୱାମୀଜୀ ପରୋପକାର ଏବଂ ସେବାକୁ ଅତି ଉଚ୍ଚସ୍ଥାନ ଦେଇଥିଲେ, ସମାଜରେ ଦୁଃଖୀ, ଦରିଦ୍ର, ଅବହେଳିତ ଲୋକଙ୍କର ସେବାକରିବା ପରମ ଧର୍ମ ବୋଲି ସେ ବାରମ୍ବାର

ଘୋଷଣା କରି 'ରାମକୃଷ୍ଣ ମିଶନ' ପ୍ରତିଷ୍ଠା କରିଥିଲେ । ସେବା କରିବା ଧାର୍ମିକ ଜୀବନର ଏକ ଅବିଚ୍ଛେଦ୍ୟ ଅଙ୍ଗ ବୋଲି ସ୍ୱାମୀଜୀ ବଜ୍ର ଗମ୍ଭୀର ସ୍ୱରରେ ଘୋଷଣା କରି କହିଥିଲେ, "They alone live who live for others; They rest of mankind is more dead than alive". ଏହି ଅମୂଲ୍ୟ, ଆଧ୍ୟାତ୍ମିକ ସନ୍ଦେଶ ପାଇଁ ଆଜି ମଧ୍ୟ ସାରା ପୃଥିବୀରେ ଶ୍ରୀ ରାମକୃଷ୍ଣ ମିଶନ ସର୍ବତ୍ର ସେବା ଏବଂ ପରୋପକାର କାର୍ଯ୍ୟରେ ସର୍ବଦା ନିୟୋଜିତ, "ମଦାତ୍ମା ସର୍ବଭୂତାତ୍ମା" ସ୍ୱାମୀଜୀଙ୍କ ଜୀବନର ମୂଳ ମନ୍ତ୍ର ଥିଲା ।

ଶେଷରେ ସ୍ୱାମୀଜୀ ବାରମ୍ବାର ଘୋଷଣା କରୁଥିଲେ ଯେ ଆଧ୍ୟାତ୍ମିକତା ବାସ୍ତବ ଜୀବନଠାରୁ ଭିନ୍ନ ନୁହେଁ, ଚରିତ୍ରବାନ୍, ଶୁଦ୍ଧ, ସ୍ନେହୀ, ସମ୍ବେଦନାଶୀଳ ମନୁଷ୍ୟ ସୃଷ୍ଟି କରିବା ହିଁ ତାଙ୍କ ଜୀବନର ଲକ୍ଷ୍ୟ ବୋଲି ସେ ବାରମ୍ବାର କହୁଥିଲେ । ଭଲ ମଣିଷ ଗଢିଲେ ସମାଜ ସୁସ୍ଥ ଏବଂ ସବଳ ହୋଇ ପାରିବ । ତେଣୁ ଉତ୍ତମ ମନୁଷ୍ୟ ସୃଷ୍ଟି କରିବା ଆଧ୍ୟାତ୍ମିକତାର ଏକମାତ୍ର ଉଦ୍ଦେଶ୍ୟ ।

ସ୍ୱାମୀଜୀଙ୍କର ଦେଶାତ୍ମବୋଧର ତୁଳନା ନାହିଁ । ସେ ଯୁବକମାନଙ୍କୁ ସମ୍ବୋଧନ କରି କହୁଥିଲେ ଯେ ଆମର ପ୍ରଥମ ଏବଂ ପ୍ରଧାନ ଦେବତା ହେଉଛନ୍ତି ଆମର ଦେଶ ଭାରତମାତା, ଦେଶର ପରାଧୀନତାରେ ବ୍ୟଥିତ ହୋଇ ସ୍ୱାମୀଜୀ ୧୮୯୭ ମସିହାରେ ଭବିଷ୍ୟବାଣୀ କରି କହିଥିଲେ ଯେ "ପଚାଶ ବର୍ଷ ମଧ୍ୟରେ ଦେଶ ସ୍ୱାଧୀନତା ପ୍ରାପ୍ତ ହେବ", ତାହାହିଁ ହେଲା ଠିକ୍ ୫୦ବର୍ଷ ପରେ ୧୯୪୭ ମସିହାରେ ଆମର ଦେଶ ସ୍ୱାଧୀନତା ଲାଭ କଲା ।

ତେଣୁ ସବୁଦୃଷ୍ଟିରୁ ସ୍ୱାମୀ ବିବେକାନନ୍ଦ ଜଣେ ଅନନ୍ୟ ସାଧାରଣ, ମାନବବାଦୀ, ପ୍ରଜ୍ଞାବାନ୍, ପ୍ରଚଣ୍ଡ ବୈରାଗୀ ଓ ମହାନ୍ ସନ୍ନ୍ୟାସୀ ଥିଲେ । ତାଙ୍କ ହୃଦୟ ଦରିଦ୍ର ଦେଶବାସୀ ଓ ମାନବ ଜାତି ପାଇଁ କାନ୍ଦି ଉଠୁଥିଲା । ସେ ଆଧ୍ୟାତ୍ମିକତାକୁ ସମାଜ ସେବାର ଏକ ମାଧ୍ୟମ ବୋଲି ଗ୍ରହଣ କରିଥିଲେ । ଆଧ୍ୟାତ୍ମିକତା କେବେହେଲେ ମାନବିକତାଠାରୁ ଭିନ୍ନ ହୋଇପାରିବ ନାହିଁ ବୋଲି ସେ ବାରମ୍ବାର କହୁଥିଲେ ଏବଂ ସେହି ଆଦର୍ଶକୁ ନିଜ ଜୀବନରେ ପାଳନ କରିଥିଲେ ।

ଭାରତର ପ୍ରାଚୀନ ପାଞ୍ଚ ହଜାର ବର୍ଷର ଗୌରବମୟ ପରମ୍ପରାରେ ଆଧୁନିକ ବୈଜ୍ଞାନିକ ଯୁଗରେ ସେ ନିଶ୍ଚିତଭାବେ ଭାରତର ସର୍ବୋତ୍କୃଷ୍ଟ ଓ ସର୍ବଶ୍ରେଷ୍ଠ ପ୍ରତିନିଧି ଥିଲେ । ଏଥିରେ ତିଳେ ମାତ୍ର ସନ୍ଦେହ ନାହିଁ ।



# ସ୍ୱାମୀ ବିବେକାନନ୍ଦ ଓ ମାନବତାବାଦ

*ଶରତ ଚନ୍ଦ୍ର ଜେନା*

ସ୍ୱାମୀ ବିବେକାନନ୍ଦଙ୍କ ଧର୍ମ ଓ ଜୀବନଦର୍ଶନ ଥିଲା ମାନବକୈନ୍ଦ୍ରିକ । ମଣିଷ ଥିଲା ସ୍ୱାମୀଜୀଙ୍କ ଜୀବନର, ଚିନ୍ତା ଓ ଚେତନାର, ଧର୍ମ ଓ ଦର୍ଶନର କେନ୍ଦ୍ରବିନ୍ଦୁ । ମଣିଷ ପାଇଁ ଥିଲା ତାଙ୍କର ଅପରିସୀମ ପ୍ରେମ । ମଣିଷର ସେବା, ମଣିଷର କଲ୍ୟାଣ, ମଣିଷର ମୁକ୍ତି ପାଇଁ ସେ ତାଙ୍କ ଜୀବନ ଉତ୍ସର୍ଗ କରିଥିଲେ ବସ୍ତୁତଃ ସ୍ୱାମୀଜୀଙ୍କ ଧର୍ମ ଥିଲା ମାନବଧର୍ମ, ଯାହାର ଆଧୁନିକ ପରିଭାଷା ହେଉଛି 'ମାନବତାବାଦ' (Humanism) । ସ୍ୱାମୀ ବିବେକାନନ୍ଦ ଥିଲେ ମାନବତାବାଦର ସର୍ବଶ୍ରେଷ୍ଠ ପ୍ରବର୍ତ୍ତକ, ସର୍ବଶ୍ରେଷ୍ଠ ସାଧକ ଓ ସର୍ବଶ୍ରେଷ୍ଠ ରୂପକାର ।

ସ୍ୱାମୀଜୀଙ୍କ ଦୃଷ୍ଟିରେ ମଣିଷ ରକ୍ତମାଂସରେ ଗଢା କ୍ଷୁଦ୍ର ଜୀବମାତ୍ର ନୁହେଁ । ତାଙ୍କ ଦୃଷ୍ଟିରେ ମଣିଷ ହିଁ ସ୍ୱୟଂ ଈଶ୍ୱର । ସ୍ୱାମୀଜୀ ଦୃଢ ଓ ସ୍ପଷ୍ଟ ଭାଷାରେ କହୁଥିଲେ, "ଆମେମାନେ ଶରୀର, ଏହା ସବୁଠାରୁ ବଡ ମିଥ୍ୟା କଥା । ଆମେମାନେ ଶରୀର ନୋହୁଁ ବା କେବେ ନଥିଲୁ । ବାସ୍ତବରେ ଆମେ ଈଶ୍ୱର ।" ସ୍ୱାମୀଜୀ କହୁଥିଲେ, "ତୁମେ ଯଦି ଈଶ୍ୱର ନହୁଅ, ତେବେ ଈଶ୍ୱର କେବେ ନାହାନ୍ତି ବା ନଥିଲେ ।" E.P. Sturdy ଙ୍କୁ ଲିଖିତ ତାଙ୍କର ବିଖ୍ୟାତ ଉକ୍ତି, "ଆମେମାନେ ସେହି ଈଶ୍ୱରଙ୍କ ସେବକ, ଯାହାକୁ ଅଜ୍ଞ ଲୋକମାନେ 'ମଣିଷ' ବୋଲି କହନ୍ତି ।" ମଣିଷର ସ୍ୱରୂପ ସମ୍ପର୍କରେ ସ୍ୱାମୀଜୀଙ୍କର ଏହି ସିଦ୍ଧାନ୍ତ ବେଦାନ୍ତଭିତ୍ତିକ । ଉପନିଷଦ୍ କହେ – "ଅହଂ ବ୍ରହ୍ମାସ୍ମି" (ମୁଁ ବ୍ରହ୍ମ), "ତତ୍ତ୍ୱମସି" (ତୁମେ ବ୍ରହ୍ମ) ଅର୍ଥାତ୍ ମୁଁ ସେହି ଈଶ୍ୱର, ତୁମେ ସେହି ଈଶ୍ୱର । ଉପନିଷଦ୍‌ର ସେହି ମହାନ ଉକ୍ତି – "ଜୀବ ବ୍ରହ୍ମୈବ ନାପରଃ" (ଜୀବ ହିଁ ବ୍ରହ୍ମ, ଜୀବ ବ୍ରହ୍ମଠାରୁ ଅଭିନ୍ନ) । ବସ୍ତୁତଃ ଏହା ହିଁ ବେଦାନ୍ତର ମୂଳ ମନ୍ତ୍ର ସ୍ୱାମୀଜୀଙ୍କର ଏହି ସିଦ୍ଧାନ୍ତ ବେଦାନ୍ତଭିତ୍ତିକ ହୋଇଥିଲେ ମଧ୍ୟ ଏହା ପୋଥିଗତ ନଥିଲା କିମ୍ବା ପାଣ୍ଡିତ୍ୟର କଥା ନଥିଲା । ଏହା ଥିଲା ତାଙ୍କ ଭଳି ଦିବ୍ୟଦ୍ରଷ୍ଟା ଋଷିର ଉପଲବ୍ଧ ସତ୍ୟ । ସ୍ୱାମୀଜୀ କହୁଥିଲେ, "ମୁଁ ଏତେ ତପସ୍ୟା କରି ଏହି ସାର କଥା ବୁଝିଛି ଯେ, ଜୀବ ଜୀବ ମଧ୍ୟରେ ଈଶ୍ୱର ଅଧିଷ୍ଠାନ ହୋଇ ରହିଛନ୍ତି । ତାହା ଛଡା ଈଶ୍ୱର ଫିଶ୍ୱର ଆଉ କିଛି ନାହିଁ" । ସ୍ୱାମୀଜୀ କହୁଥିଲେ, "Each soul is potentially divine" (ପ୍ରତ୍ୟେକ ମଣିଷ ମଧ୍ୟରେ ଦେବତ୍ୱ ପ୍ରଚ୍ଛନ୍ନ ହୋଇ ରହିଛି) । ଏହି ଦେବତ୍ୱ ହିଁ ମଣିଷର ପ୍ରକୃତ ସ୍ୱରୂପ । ମଣିଷ ଏହି ଅବ୍ୟକ୍ତ ଈଶ୍ୱର । ସ୍ୱାମୀଜୀଙ୍କ ପରିଭାଷାରେ ମନୁଷ୍ୟତ୍ୱ ଓ ଦେବତ୍ୱ ଏହି ଦୁଇଟି ସମାର୍ଥକ ଶବ୍ଦ । ସ୍ୱାମୀଜୀଙ୍କ ଦୃଷ୍ଟିରେ ମଣିଷ କ୍ଷୁଦ୍ର ନୁହେଁ, ହୀନ ନୁହେଁ, ଦୁର୍ବଳ ନୁହେଁ, ପାପୀ ନୁହେଁ । ମଣିଷ ଭିତରେ ରହିଛି ଅସୀମ ଶକ୍ତି, ଅନନ୍ତ ସମ୍ଭାବନା । ମଣିଷକୁ ପାପୀ କହିବା ହିଁ ପାପ, ମଣିଷକୁ ଦୁର୍ବଳ କହିବା ହିଁ ପାପ । ଚିକାଗୋ ଧର୍ମ ମହାସଭାରେ ସ୍ୱାମୀଜୀ ଉଦ୍‌ଘୋଷିତ କରିଥିଲେ ମଣିଷର ଏହି ଦିବ୍ୟ ସ୍ୱରୂପ ଉଦାତ୍ତ କଣ୍ଠରେ – "ଅମୃତର ସନ୍ତାନ ତୁମେମାନେ, ଅମୃତର ଅଧିକାରୀ, ପବିତ୍ର, ପୂର୍ଣ୍ଣ ତୁମର ସ୍ୱରୂପ । ମର୍ତ୍ତ୍ୟଭୂମିର ଦେବତା ତୁମେମାନେ । ତୁମେମାନେ ପାପୀ ? ମଣିଷକୁ ପାପୀ କହିବା ହିଁ ପାପ । ମଣିଷର ଯଥାର୍ଥ ସ୍ୱରୂପ ଉପରେ ଏହା ଏକ ମିଥ୍ୟା କଳଙ୍କାରୋପ । ସିଂହ ସ୍ୱରୂପ ତୁମେମାନେ ।

ଭ୍ରାନ୍ତି ବଶତଃ ନିଜକୁ ମେଷ ତୁଲ୍ୟ ମନେ କରୁଛ । ଏହି ଭ୍ରାନ୍ତିର ଜାଲ ଛିନ୍ନ କରିଦିଅ । ଅମରଆତ୍ମା ତୁମେମାନେ । ମୁକ୍ତ ଶାଶ୍ୱତ, ଆନନ୍ଦ ତୁମର ସ୍ୱରୂପ ।" ସ୍ୱାମୀଜୀଙ୍କ ମାନବତାବାଦର ମୂଳ ଉଦ୍ଦେଶ୍ୟ ହେଉଛି ମଣିଷର ପ୍ରକୃତ ସ୍ୱରୂପର ଉନ୍ମୋଚନ । ମଣିଷର ସ୍ୱରୂପ ନଜାଣି, ମଣିଷର ଜାଗରଣ, ଉତ୍ତରଣ, କଲ୍ୟାଣ ସାଧନାର ପ୍ରଚେଷ୍ଟା ନିରର୍ଥକ ଓ ଅବାସ୍ତବ । ଏହି ଅର୍ଥରେ ସ୍ୱାମୀଜୀଙ୍କ ମାନବତାବାଦ ଓ ପାଶ୍ଚାତ୍ୟ ମାନବତାବାଦ ମଧ୍ୟରେ ମୌଳିକ ପାର୍ଥକ୍ୟ ଅଛି । ପାଶ୍ଚାତ୍ୟ ମାନବତାବାଦ ମଣିଷର ଜୈବସତ୍ତାରେ ବିଶ୍ୱାସୀ । ଏହା ବିଶ୍ୱାସ କରେ ଯେ, ମଣିଷ ହିଁ ଦେହ ଆଉ ବୁଦ୍ଧିର ସମଷ୍ଟି । ଏହି ମାନବତାବାଦ ବିଶ୍ୱାସ କରେନା ମଣିଷ ଏକ ଦିବ୍ୟସତ୍ତା, ଏକ ଆତ୍ମିକସତ୍ତା । ତେଣୁ ଏହା ଦୈହିକ ଓ ବୌଦ୍ଧିକ ବିକାଶରେ ହିଁ ସୀମାବଦ୍ଧ । ଏହି ମାନବତାବାଦରେ ମଣିଷ ଆତ୍ମିକ ବିକାଶର କୌଣସି ପ୍ରଚେଷ୍ଟା ନାହିଁ ବା ସ୍ଥାନ ନାହିଁ । ଅପରନ୍ତୁ ସ୍ୱାମୀଜୀଙ୍କ ମାନବତାବାଦର ମୂଳ ମନ୍ତ୍ର ହେଲା – "ମଣିଷର ଆତ୍ମିକ ବିକାଶ" । ସଂକ୍ଷେପରେ କହିଲେ ପାଶ୍ଚାତ୍ୟର ମାନବତାବାଦ ଲକ୍ଷ୍ୟ ହେଲା ନରକୁ ନରୋତ୍ତମ କରିବା କିନ୍ତୁ ବିବେକାନନ୍ଦଙ୍କ ମାନବତାବାଦର ମୂଳ ଲକ୍ଷ୍ୟ ହେଲା ନରକୁ ନାରାୟଣରେ ପରିଣତ କରିବା, ଜୀବକୁ ଶିବତ୍ୱରେ ପ୍ରତିଷ୍ଠିତ କରିବା ।

ସ୍ୱାମୀଜୀ ମଣିଷକୁ ଈଶ୍ୱର କରିବାକୁ, ଜୀବକୁ ଶିବତ୍ୱରେ, ନରକୁ ନାରାୟଣରେ ପ୍ରତିଷ୍ଠିତ କରିବାକୁ ଆସିଥିଲେ । ତାଙ୍କର ଆହ୍ୱାନ ଥିଲା – " Let us be Gods and then help others to be Gods" (ଆସ ଆମେ ପ୍ରଥମେ ଈଶ୍ୱର ହେବା ଓ ପରେ ଅନ୍ୟକୁ ଈଶ୍ୱର ହେବାରେ ସାହାଯ୍ୟ କରିବା) । ସଂକ୍ଷେପରେ ତାଙ୍କର ଆହ୍ୱାନ ଥିଲା, " Be and make" । କିନ୍ତୁ ମଣିଷ ଈଶ୍ୱର ହେବ କିପରି ? ସ୍ୱାମୀଜୀ କହୁଥିଲେ ଧର୍ମ ଦ୍ୱାରା । ସ୍ୱାମୀଜୀଙ୍କ ମତରେ ଧର୍ମ ହେଉଛି ସେହି ବିଜ୍ଞାନ ଯାହା ମଣିଷକୁ ଈଶ୍ୱର କରେ । ସ୍ୱାମୀଜୀଙ୍କ ଧର୍ମର ସଂଜ୍ଞା (definition), ହେଲା – **"Religion is manifestation of divinity already in man"** (ମଣିଷର ଅନ୍ତର୍ନିହିତ ଦେବତ୍ୱର ପରିପ୍ରକାଶ ହିଁ ଧର୍ମ) । ସ୍ୱାମୀଜୀ ଭଗିନୀ ନିବେଦିତାଙ୍କୁ ଗୋଟିଏ ଚିଠିରେ ଲେଖିଥିଲେ – "ମୋର ଆଦର୍ଶକୁ ବସ୍ତୁତଃ ଅତି ସଂକ୍ଷେପରେ କୁହାଯାଇପାରେ, ତାହା ହେଉଛି – ମଣିଷ ନିକଟରେ ତାହାର ଅନ୍ତର୍ନିହିତ ଦେବତ୍ୱ ବାର୍ତ୍ତା ପହଞ୍ଚାଇଦେବା ଓ ଜୀବନର ପ୍ରତ୍ୟେକ କ୍ଷେତ୍ର, ପ୍ରତ୍ୟେକ ମୁହୂର୍ତ୍ତରେ ସେହି ଦେବତ୍ୱର ବିକାଶର ପନ୍ଥା ନିର୍ଦ୍ଧାରଣ କରିବା ।" ସ୍ୱାମୀଜୀଙ୍କର ଏହି ଆଦର୍ଶର ପ୍ରଥମ ଦିଗ ହେଲା ମଣିଷ ଯେ ସ୍ୱରୂପତଃ ଈଶ୍ୱର, ମଣିଷ ଯେ ଏକ ଆତ୍ମିକସତ୍ତା (spiritual entity), ଦିବ୍ୟସତ୍ତା (divine self), ଏହି ବାର୍ତ୍ତା ମଣିଷ ନିକଟରେ ପହଞ୍ଚାଇଦେବାକୁ ହେବ । କେବଳ ସେତିକି ନୁହେଁ ଏହି ଆଦର୍ଶର ଦ୍ୱିତୀୟ ଓ ପ୍ରଧାନ ଦିଗ ହେଲା ମଣିଷ ଯେପରି ତାର ଜୀବନର ପ୍ରତ୍ୟେକ କ୍ଷେତ୍ରରେ, ପ୍ରତ୍ୟେକ ମୁହୂର୍ତ୍ତରେ, ତାର ଆଚରଣ ଓ ବ୍ୟବହାରରେ ଏହି ଦେବତ୍ୱର ପ୍ରକାଶ ଓ ବିକାଶ ଘଟାଇପାରିବ ତାହା ତାକୁ ଶିକ୍ଷା ଦେବା । ମଣିଷର ସ୍ୱରୂପର ଉନ୍ମୋଚନ ହେଲେ, ମଣିଷର ଅନ୍ତର୍ନିହିତ ଦେବତ୍ୱର ବିକାଶ ଘଟିଲେ କଣ ଫଳ ହୁଏ ତାହାର ଉତ୍ତରରେ ସ୍ୱାମୀଜୀ କହୁଥିଲେ, "Teach yourselves, teach everyone his/her real nature, call upon the sleeping soul and see how it awakes. Power will

come, glory will come, goodness will come, purity will come, everything that is excellent will come, when this sleeping soul is roused to self-conscious activity" (ତୁମେ ନିଜକୁ ଓ ଅନ୍ୟ ସମସ୍ତଙ୍କୁ ନିଜର ସ୍ୱରୂପ ସମ୍ପର୍କରେ ଶିକ୍ଷା ଦିଅ । ଘୋର ମହାନିଦ୍ରାରେ ଅଭିଭୂତ ଜୀବାତ୍ମାର ନିଦ୍ରା ଭଙ୍ଗ କର । ଆତ୍ମା ପ୍ରବୃଦ୍ଧ ହେଲେ ଶକ୍ତି ଆସିବ, ମହିମା ଆସିବ, ସାଧୁତ୍ୱ ଆସିବ, ପବିତ୍ରତା ଆସିବ - ଯାହାକିଛି ଭଲ ସବୁ ଆସିବ) । ସଂକ୍ଷେପରେ କହିଲେ ମଣିଷର ଜୀବନର ପ୍ରତ୍ୟେକ କ୍ଷେତ୍ରରେ, ପ୍ରତ୍ୟେକ ମୁହୂର୍ତ୍ତରେ ଦେବତ୍ୱର ପରିପ୍ରକାଶ ହେଲେ ମଣିଷ ହୋଇଯାଏ ଦେବତା, ମଣିଷ ଜୀବନ ହୋଇଯାଏ ଦିବ୍ୟଜୀବନ । ଏଠାରେ ଉଲ୍ଲେଖନୀୟ ସ୍ୱାମୀ ବିବେକାନନ୍ଦଙ୍କର ଏକ ବିଖ୍ୟାତ ଉକ୍ତି ଯାହା ସେ ତାଙ୍କର "ଭାରତୀୟ ଜୀବନରେ ବେଦାନ୍ତର କାର୍ଯ୍ୟକାରିତା" ଶୀର୍ଷକ ବକ୍ତୃତାରେ କହିଥିଲେ, "ଯଦି ଜଣେ ମତ୍ସ୍ୟଜୀବୀ ନିଜକୁ ଆତ୍ମା ବୋଲି ମନେକରେ, ତେବେ ସେ ଜଣେ ଭଲ ମତ୍ସ୍ୟଜୀବୀ ହେବ । ଜଣେ ବିଦ୍ୟାର୍ଥୀ ଯଦି ନିଜକୁ ଆତ୍ମା ବୋଲି ମନେକରେ, ସେ ଜଣେ ଭଲ ବିଦ୍ୟାର୍ଥୀ ହେବ । ଜଣେ ଆଇନଜୀବୀ ଯଦି ନିଜକୁ ଆତ୍ମା ବୋଲି ମନେକରେ, ସେ ଜଣେ ଭଲ ଆଇନଜୀବୀ ହେବ ।" ଏହାର ସାର ମର୍ମ ହେଲା ମଣିଷ ଯଦି ତାର ଦିବ୍ୟ ସ୍ୱରୂପକୁ ଉପଲବ୍ଧି କରେ ଓ ଏହି ଦିବ୍ୟ ସ୍ୱରୂପକୁ ତାର ଜୀବନରେ ପରିପ୍ରକାଶ କରେ ତାହେଲେ ତାର ବ୍ୟକ୍ତିତ୍ୱରେ, ତାର ଚିନ୍ତା-ଚେତନାରେ ଓ ତାର କାର୍ଯ୍ୟରେ ଆସେ ଅଦ୍ଭୁତ ପରିବର୍ତ୍ତନ (transformation) । ସେଥିପାଇଁ ସ୍ୱାମୀଜୀ କହୁଥିଲେ, "Manifest divinity within you and everything will be harmoniously arranged around it" (ତୁମର ଅନ୍ତର୍ନିହିତ ଦେବତ୍ୱ ବିକଶିତ କର, ଆଉ ସବୁକିଛି ଏହାର ଚତୁର୍ଦ୍ଦିଗରେ ସୁସମଞ୍ଜସ୍ୟ ଭାବରେ ପ୍ରତିଫଳିତ ହେବ) । ମଣିଷର ଦିବ୍ୟ ସ୍ୱରୂପର ଉନ୍ମୋଚନ ଓ ତାର ଅନ୍ତର୍ନିହିତ ଦେବତ୍ୱର ପରିପ୍ରକାଶ ହେଉଛି ସ୍ୱାମୀଜୀଙ୍କ ମାନବତାବାଦର ମୂଳ ମନ୍ତ୍ର ।

ସ୍ୱାମୀ ବିବେକାନନ୍ଦଙ୍କ ଦୃଷ୍ଟିରେ ମଣିଷ ହିଁ ସବୁଠାରୁ ବଡ ଦେବତା । ମଣିଷର ସେବା ଓ ମଣିଷକୁ ଭଲ ପାଇବା ହିଁ ସବୁଠାରୁ ବଡ ଧର୍ମ । ସ୍ୱାମୀଜୀଙ୍କ ମତରେ ମଣିଷରୂପୀ ଜୀବନ୍ତ ଈଶ୍ୱରଙ୍କୁ ଉପେକ୍ଷା କରି ମନ୍ଦିର, ମସ୍‌ଜିଦ୍, ଗୀର୍ଜାରେ ଈଶ୍ୱରଙ୍କୁ ଅନ୍ୱେଷଣ କରିବା ନିର୍ବୋଧତା ଛଡା କିଛି ନୁହେଁ । ସ୍ୱାମୀଜୀ ତାଙ୍କ ଶିଷ୍ୟ ଆଲାସିଙ୍ଗାଙ୍କୁ ଏକ ପତ୍ରରେ ଲେଖିଥିଲେ – "ତୁମେମାନେ କଣ ଈଶ୍ୱରଙ୍କୁ ଭଲପାଅ ? ତେବେ ପଚାରେ, ଈଶ୍ୱରଙ୍କ ଅନ୍ୱେଷଣରେ କେଉଁଠାକୁ ଯାଉଛ ? ଦରିଦ୍ର ଦୁଃଖୀ, ଦୁର୍ବଳ ମଣିଷ କଣ ତୁମର ଈଶ୍ୱର ନୁହଁନ୍ତି ? ଗଙ୍ଗା କୂଳରେ ବାସ କରି କୂଅ ଖୋଳୁଛ କାହିଁକି ? ସ୍ୱାମୀଜୀଙ୍କର ଏହି ଭାବଟି ପରିସ୍ଫୁଟ ହୋଇଛି ତାଙ୍କର ଏକ ମର୍ମସ୍ପର୍ଶୀ କବିତା ପଂକ୍ତିରେ –

"ବହୁ ରୂପେ ସମ୍ମୁଖେ ତୁମର ଛାଡି କାହିଁ ଖୋଜୁଛ ଈଶ୍ୱର
ଜୀବେ ପ୍ରେମ କରେ ଯେଉଁ ଜନ ସେଇ ଜନ ସେବିଛି ଈଶ୍ୱର ।"

ସ୍ୱାମୀ ବିବେକାନନ୍ଦ କହୁଥିଲେ, "ସେବା କହିଲେ ମୋର ଭାବଟା ସମ୍ପୂର୍ଣ୍ଣ ପ୍ରକାଶିତ ହୁଏ ନାହିଁ । ସେବା ନୁହେଁ, ଶିବ ଜ୍ଞାନରେ ଜୀବର ପୂଜା ।" ମଣିଷକୁ ଦେବତାର ଆସନରେ ବସାଇ ସେବା ମାଧ୍ୟମରେ ତାର ଉପାସନା । ମଣିଷର ଏହି ସେବା ଦୟା ବା ଅନୁକମ୍ପା ବଶବର୍ତ୍ତୀ ହୋଇ ନୁହେଁ । କାରଣ ସେବ୍ୟ ଏଠାରେ ନର ନୁହେଁ, ସ୍ୱୟଂ ନାରାୟଣ । ଏଠାରେ ଦୟା କିମ୍ବା ଅନୁକମ୍ପାର ପ୍ରଶ୍ନ ଉଠିପାରେ ନାହିଁ । ଏହି ସେବାରେ ଅଛି ସେବ୍ୟ ପ୍ରତି ସେବକର କୃତଜ୍ଞତାବୋଧ । କାରଣ ଏହି ସେବା ଦ୍ୱାରା ସେ ପାଇଥାଏ ନରରୂପୀ ନାରାୟଣଙ୍କୁ ସେବା କରିବାର ଏକ ଅପୂର୍ବ ସୁଯୋଗ । ସ୍ୱାମୀଜୀ କହୁଥିଲେ, "ନିଜକୁ ବଡ ମନେ କରନା । ତୁମେ ଧନ୍ୟ, ଯେ ସେବା କରିବାର ସୁଯୋଗ ତୁମେ ପାଇଛ । ପୂଜା ରୂପରେ ଏହା କର **(do it only as a.worship)** ।" ସ୍ୱାମୀଜୀ ତାଙ୍କର ଜଣେ ଗୁରୁଭାଇଙ୍କୁ ଲେଖିଥିଲେ, "ଜାଣେ ନାହିଁ ତୁମେ ଧର୍ମ କହିଲେ କଣ ବୁଝ ? ଠାକୁର କହୁଥିଲେ – ଖାଲି ପେଟରେ ଧର୍ମ ହୁଏ ନାହିଁ । ମୋ ନିକଟରେ ଧର୍ମର ଅର୍ଥ ଦରିଦ୍ର, ଅସହାୟ, ଦୁଃଖୀ ମଣିଷର ସେବା କରିବା, ସେମାନଙ୍କ ନିର୍ଜୀବ ହୃଦୟରେ ପ୍ରାଣସଂଞ୍ଚାର କରିବା । ଚତୁର୍ଦ୍ଦିଗରେ ମଣିଷ ମରି ପଡୁଛି, ମଠ ମନ୍ଦିର ନେଇ କଣ ହେବ ଭାଇ । ଯଦି ଭଲ ଚାହଁତ ଘଣ୍ଟା ଫଣ୍ଟା ସବୁ ଗଙ୍ଗାରେ ବିସର୍ଜ୍ଜନ କରି ସାକ୍ଷାତ ଜୀବନ୍ତ ନରରୂପୀ ନାରାୟଣଙ୍କ ପୂଜା କର । ତାର ପୂଜାର ଅର୍ଥ ସେବା । ଏହା ହିଁ ପ୍ରକୃତ କର୍ମ – ଘଣ୍ଟା ବଜାଇବା, ଚାମର ବୁଲାଇବା ନୁହେଁ ।" ମଣିଷର ଦୁଃଖ ଦୁର୍ଦ୍ଦଶାକୁ ଉପେକ୍ଷା କରି, ଧର୍ମ ନାମରେ ଯେଉଁ ଭଣ୍ଡାମି, ଶୋଷଣ ଓ ଅତ୍ୟାଚାର ଚାଲିଛି, ସେଥିରେ କ୍ଷୁବ୍ଧ ହୋଇ ସ୍ୱାମୀଜୀ ତାଙ୍କର ଶିଷ୍ୟ ଆଲ୍ଲାସିଙ୍ଗାଙ୍କୁ ଲେଖିଥିଲେ, "ଯେଉଁ ଧର୍ମ ବା ଯେଉଁ ଈଶ୍ୱର ବିଧବାର ଆଖି ଲୁହ ପୋଛିପାରେ ନାହିଁ କିମ୍ବା ଅନାଥର ମୁହଁରେ ଦୁଇଟା ଅନ୍ନ ଦେଇପାରେ ନାହିଁ, ମୁଁ ସେହି ଧର୍ମ ବା ସେହି ଈଶ୍ୱରଙ୍କୁ ବିଶ୍ୱାସ କରେ ନାହଁ ।"

ସ୍ୱାମୀଜୀ ମଣିଷକୁ ଭଲ ପାଉଥିଲେ ଅତି ନିବିଡ ଭାବରେ । ତାଙ୍କ ଭଲ ପାଇବା ଥିଲା ସୁଗଭୀର, ଐକାନ୍ତିକ, ଅନିର୍ବଚନୀୟ । ସ୍ୱାମୀଜୀ କହୁଥିଲେ, **"I have fallen love with man"** (ମୁଁ ମଣିଷର ପ୍ରେମରେ ପଡି ଯାଇଛି) । ଏଠାରେ ଉଲ୍ଲେଖଯୋଗ୍ୟ ସ୍ୱାମୀଜୀ ମଣିଷକୁ ଭଲ ପାଉଥିଲେ ରକ୍ତମାଂସରେ ଗଢା ମଣିଷ ବୋଲି ନୁହେଁ, ମଣିଷ ଈଶ୍ୱର ବୋଲି । ସ୍ୱାମୀଜୀ କହୁଥିଲେ, "ମଣିଷ ଯଥାର୍ଥ ଭଲପାଇ ପାରିବ, ଯେତେବେଳେ ସେ ଉପଲବ୍ଧି କରିପାରିବ ତାର ଭଲପାଇବାର ବସ୍ତୁ ମର୍ତ୍ତ୍ୟଜୀବ ନୁହେଁ, ସେ ହେଉଛି ସ୍ୱୟଂ ଭଗବାନ । ସ୍ତ୍ରୀ ତାର ସ୍ୱାମୀକୁ ଅଧିକ ଭଲପାଇବ, ଯଦି ସେ ଉପଲବ୍ଧି କରେ ତାର ସ୍ୱାମୀ ସ୍ୱୟଂ ଭଗବାନ । ମା ତାର ସନ୍ତାନକୁ ଆହୁରି ଭଲପାଇବ, ଯଦି ସେ ଉପଲବ୍ଧି କରିପାରେ ତାର ସନ୍ତାନ ସ୍ୱୟଂ ଈଶ୍ୱର ବୋଲି । ଜଣେ ତାର ଶତ୍ରୁକୁ ଭଲପାଇ ପାରିବ, ଯଦି ସେ ଜାଣିପାରେ ତାର ଶତ୍ରୁ ହେଉଛି ସ୍ୱୟଂ ଭଗବାନ ।" ସ୍ୱାମୀଜୀ କହୁଥିଲେ, "ତୁମେ ହିଁ ମୁଁ, ମୁଁ ହିଁ ତୁମେ" । ଏହି ଏକାତ୍ମତାରୁ ପ୍ରେମର ଜନ୍ମ । ସ୍ୱାମୀଜୀଙ୍କ ଦୃଷ୍ଟିରେ ପ୍ରେମ ଏକ ଭାବାବେଗ ନୁହେଁ । ଏହା ଏକାତ୍ମତା ଉପରେ ପ୍ରତିଷ୍ଠିତ । ସ୍ୱାମୀଜୀ କହୁଥିଲେ, ନିପୀଡିତ, ମୂର୍ଖ, ଦରିଦ୍ରମାନଙ୍କୁ ମୁଁ ଭଲପାଏ। ସେମାନଙ୍କ ଦୁଃଖ ଓ ବେଦନାକୁ କେତେ ତୀବ୍ର ଭାବରେ ଅନୁଭବ କରେ ତାହା

ଭଗବାନ ଜାଣନ୍ତି।" ସ୍ୱାମୀଜୀ ଥିଲେ ଦୁଃଖୀ, ଦରିଦ୍ର, ଘୃଣିତ, ନିଷ୍ପେଷିତ ମଣିଷର ଦରଦୀ ବନ୍ଧୁ। ସେମାନଙ୍କର ଦୁଃଖ ଦୁର୍ଦ୍ଦଶାର ବିମୋଚନ ପାଇଁ ବରିନେଇଥିଲେ ମାନବ କଲ୍ୟାଣର କଠିନ ବ୍ରତ । ଏହି ବ୍ରତର ଦୁରୂହ କୁଶଦଣ୍ଡର ଭାର ସାରାଜୀବନ ବହନ କରିଥିଲେ ନିଜ ସ୍କନ୍ଧରେ । ସ୍ୱାମୀଜୀ କହୁଥିଲେ, "ନିଖିଳ ଆତ୍ମାର ସମଷ୍ଟି ସ୍ୱରୂପ ଯେଉଁ ଭଗବାନ ବିଦ୍ୟମାନ ଅଛନ୍ତି ଓ ଯେଉଁ ଭଗବାନଙ୍କ ଅସ୍ତିତ୍ୱରେ ମୁଁ ଏକମାତ୍ର ବିଶ୍ୱାସୀ, ସେହିମାନଙ୍କ ପୂଜା ଲାଗି ମୁଁ ଥରକୁ ଥର ଜନ୍ମ ଗ୍ରହଣ କରେ ଓ ସହସ୍ର ଯନ୍ତ୍ରଣା ଭୋଗକରେ । ସର୍ବୋପରି ମୋର ସର୍ବାଧିକ ଉପାସ୍ୟ ମୋର ପାପୀ ନାରାୟଣ, ମୋର ତାପୀ ନାରାୟଣ, ମୋର ଦରିଦ୍ର ନାରାୟଣ ।" ସ୍ୱାମୀଜୀ କହୁଥିଲେ, "ମୁଁ ଭକ୍ତି ବା ମୁକ୍ତିର ଧାର ଧାରେନା ଅନ୍ୟର ମଙ୍ଗଳ ପାଇଁ ମୁଁ ଶତସହସ୍ର ନରକକୁ ଯାଇପାରେ – ଏହା ହିଁ ମୋର ଧର୍ମ ।"

ପ୍ରତିଟି ମଣିଷର ଅପରିସୀମ ମହିମା ସମ୍ପର୍କରେ ସ୍ୱାମୀଜୀ ଥିଲେ ଗଭୀର ଭାବରେ ଶ୍ରଦ୍ଧାଶୀଳ । ସ୍ୱାମୀଜୀ କହୁଥିଲେ, "ମଣିଷର ସ୍ୱରୂପର ମହତ୍ୱ କେବେ ଭୁଲ ନାହିଁ । ଈଶ୍ୱରଙ୍କ ଶ୍ରେଷ୍ଠ ପ୍ରକାଶ ମଣିଷ ଭିତରେ । ସ୍ୱାମୀଜୀ କହୁଥିଲେ, "ମଣିଷ ସେହି ଅନନ୍ତ ସମୁଦ୍ର, ଖ୍ରୀଷ୍ଟ ଓ ବୁଦ୍ଧଗଣ ତା ଉପରେ ତରଙ୍ଗ ମାତ୍ର ।" ସ୍ୱାମୀଜୀଙ୍କ ମତରେ ସକଳ ମଣିଷ ଦିବ୍ୟସତ୍ତାସମ୍ପନ୍ନ । କାହା ମଧ୍ୟରେ ତାର ପୂର୍ଣ୍ଣ ବିକାଶ ଘଟିଛି ଓ କାହା ମଧ୍ୟରେ ତାହା ସୁପ୍ତ ଅଛି । ସ୍ୱାମୀଜୀ ଏହି ଭାବଟିକୁ ବୁଝାଇବାକୁ ଯାଇ କହୁଥିଲେ, "ମୋ ମଧ୍ୟରେ ପ୍ରକାଶ ହୁଏତ କମ, ତୁମ ମଧ୍ୟରେ ପ୍ରକାଶ ହୁଏତ ବେଶୀ, କିନ୍ତୁ ଆମେ ଉଭୟ ଏକ ବସ୍ତୁ ତୁମେ ଓ ମୁଁ ସେହି ଈଶ୍ୱର ନାମକ ଅନନ୍ତ ସାଗରର ଦୁଇଟି କ୍ଷୁଦ୍ର ଅଂଶ ।" କିନ୍ତୁ ଏହି ଆପାତ ପାର୍ଥକ୍ୟ ଯୋଗୁ ଜଣେ ମଣିଷ ଅପର ଦ୍ୱାରା ଶୋଷିତ ହେବ, ନିପୀଡିତ ହେବ, ଘୃଣିତ ହେବ, ଜଣେ ଅପରର ଦାସତ୍ୱ ବହନ କରିବ – ଏହା ସ୍ୱାମୀଜୀଙ୍କ ପକ୍ଷେ ଅସହ୍ୟ ଥିଲା । ବିଶ୍ୱର ସର୍ବତ୍ର ଶୋଷିତ, ଘୃଣିତ ନରନାରୀଙ୍କ ମର୍ଯାଦା ରଖିବା ପାଇଁ ତାଙ୍କ ହୃଦୟ ଅଗ୍ନିମୟ ହୋଇ ଉଠିଥିଲା । ସେଥିପାଇଁ ମଣିଷ ଦ୍ୱାରା ତିଆରି ପ୍ରତିଟି ଶୃଙ୍ଖଳ, ପ୍ରତିଟି ବନ୍ଧନ ସେ ଭାଙ୍ଗି ଚୂର୍ମାର୍ କରିବାକୁ ଚାହିଁଥିଲେ । ସ୍ୱାମୀଜୀ କହୁଥିଲେ, " Freedom, O freedom, O freedom is the song of the soul" (ମୁକ୍ତି, ହଁ ମୁକ୍ତି, ହଁ ମୁକ୍ତି, ହଁ ମୁକ୍ତି ହିଁ ଆତ୍ମାର ସଙ୍ଗୀତ), "Freedom is its (self's) nature, its birthright" (ମୁକ୍ତି ହିଁ ମଣିଷର ସ୍ୱଭାବ, ମୁକ୍ତି ହିଁ ଏହାର ଜନ୍ମଗତ ଅଧିକାର), "Freedom is the goal" (ମୁକ୍ତି ହିଁ ଜୀବନର ଏକମାତ୍ର ଲକ୍ଷ୍ୟ) । ବିଶ୍ୱର ସମସ୍ତ ଶୋଷିତ, ନିପୀଡିତ ନରନାରୀଙ୍କ ଉଦ୍ଦେଶ୍ୟରେ ସ୍ୱାମୀଜୀଙ୍କର ଅଗ୍ନିମୟ ଆହ୍ୱାନ ଥିଲା – "ଜାତି, ଜନ୍ମ ନିର୍ବିଶେଷରେ ଅଜ୍ଞ, ଦୁର୍ବଳ ପ୍ରତ୍ୟେକ ନରନାରୀ, ଶିଶୁ ଶୁଣନ୍ତୁ ଓ ଶିଖନ୍ତୁ ଯେ କି ଶକ୍ତିମାନ, କି ଦୁର୍ବଳ, କି ଉଚ୍ଚ, କି ନୀଚ ପ୍ରତ୍ୟେକଙ୍କ ମଧ୍ୟରେ ସେହି ଅସୀମ ଆତ୍ମା ରହିଛି । ସୁତରାଂ ମହାନ ଓ ମହତ ହେବାର ଅସୀମ ସମ୍ଭାବନା ଓ ଅସୀମ ଶକ୍ତି ସମସ୍ତଙ୍କର ଅଛି । ସମସ୍ତଙ୍କ ସମ୍ମୁଖରେ ଉଚ୍ଚ ସ୍ୱରରେ କୁହ – ଉତିଷ୍ଠତ, ଜାଗ୍ରତ, ପ୍ରାପ୍ୟ ବରାନ୍ ନିବୋଧତ । ଉଠ, ଜାଗ, ଲକ୍ଷ୍ୟ ହାସଲ ନକରିବା ପର୍ଯ୍ୟନ୍ତ କ୍ଷାନ୍ତ ହୁଅ ନାହିଁ । **"Arise, awake, and stop not till the goal is reached"** । ନିଜକୁ ଦୁର୍ବଳ ଭାବି ଯେଉଁ ମୋହରେ ଆଚ୍ଛନ୍ନ ହୋଇ ରହିଛ,

ତାକୁ ଦୂର କରିଦିଅ । କେହି ପ୍ରକୃତରେ ଦୁର୍ବଳ ନୁହେଁ । ଆତ୍ମା ଅନନ୍ତ, ସର୍ବଶକ୍ତିମାନ । ଉଠ ନିଜକୁ ପ୍ରକାଶ କର । ତୁମ ଭିତରେ ଯେଉଁ ଭଗବାନ ଅଛନ୍ତି, ତାଙ୍କର ଅସ୍ତିତ୍ୱ ଘୋଷଣା କର । ତାହା ଅସ୍ୱୀକାର କରନାହିଁ ।"

ସ୍ୱାମୀଜୀଙ୍କ ମାନବତାବାଦ ଏକ ତାତ୍ତ୍ୱିକ ମତବାଦ ନୁହେଁ । ଏହା ଏକ ଜୀବନଧର୍ମୀ, ମାନବଧର୍ମୀ, ଅନନ୍ୟ ଜୀବନଦର୍ଶନ । ସ୍ୱାମୀଜୀଙ୍କ ମାନବତାବାଦର ବ୍ୟାପ୍ତି ଓ ଗଭୀରତା ମୂଲ୍ୟାୟନ କରିବା ଏକ କଷ୍ଟସାଧ୍ୟ ବ୍ୟାପାର । ମଣିଷର ଜାଗରଣ, ଉତ୍ତରଣ ଓ ସାର୍ବିକ କଲ୍ୟାଣ ଓ ବିକାଶ ସାଧନ ଏହି ମାନବତାବାଦର ମୂଳ ଲକ୍ଷ୍ୟ । "ବହୁ ଜନ ହିତାୟ, ବହୁ ଜନ ସୁଖାୟ" – ଏହାର ମୂଳ ମନ୍ତ୍ର ।

ସଭାପତି,

ରାମକୃଷ୍ଣ ବିବେକାନନ୍ଦ ସଂଘ, ଯାଜପୁର,

ମୋ-୯୪୩୭୬୦୩୦୬୦



# ସ୍ୱାମୀ ବିବେକାନନ୍ଦ ଓ ବେଦାନ୍ତ

*ଡକ୍ଟର ଅମୂଲ୍ୟ ମହାପାତ୍ର*

ବିବେକାନନ୍ଦ ନିମ୍ନମ ଚିତ୍ତଂ ବିବେକନୈକ ବିନୋଦଶୀଳମ୍ ।
ବିବେକଭାସା କମନୀୟକାନ୍ତିଂ ବିବେକିନଂ ତଂ ସତତଂ ନମାମି ॥

*(ବିବେକାନନ୍ଦ ପଞ୍ଚକମ୍)*

ଅର୍ଥାତ୍ ବିବେକ ସମ୍ଭୂତ ଆନନ୍ଦରେ ଯାହାର ଚିତ୍ତ ନିମଗ୍ନ, ଯିଏ ବିବେକ ଦାନରେ ଆନନ୍ଦିତ, ବିବେକଜ୍ୟୋତିରେ ଯେ ରମଣୀୟ ରୂପଶାଳୀ, ସେହି ବିବେକୀଙ୍କୁ ଆମେ ସର୍ବଦା ନମସ୍କାର କରୁଅଛୁ ।

ସ୍ୱାମୀ ବିବେକାନନ୍ଦ ଜଣେ ମହାନ୍ ହିନ୍ଦୁ ସନ୍ନ୍ୟାସୀ ଥିଲେ । ସେ ହିନ୍ଦୁ ଧର୍ମ, ହିନ୍ଦୁ ଦର୍ଶନ ଓ ହିନ୍ଦୁ ସନ୍ନ୍ୟାସ ଜୀବନକୁ ନୂତନ ଭାବରେ ପ୍ରାଣବନ୍ତ ଓ ପୁନଃ ସ୍ଥାପନ କରି ଭାରତ ଇତିହାସରେ ସୁନାମ ରଖିଯାଇଛନ୍ତି । ସ୍ୱାମୀ ବିବେକାନନ୍ଦ ତାଙ୍କ ଜୀବନରେ ସମସ୍ତ ସାଂସ୍କୃତିକ ଓ ଆଧ୍ୟାତ୍ମିକ ଦିଗ ପ୍ରତି ଶ୍ରଦ୍ଧା ରଖିଥିଲେ ସୁଦ୍ଧା ମୁଖ୍ୟତଃ ଆତ୍ମଜ୍ଞାନର ବିକାଶ ପ୍ରତି ସେ ଅଧିକ ପ୍ରାଧାନ୍ୟ ଦେଇଥିଲେ । ସେହି ଆତ୍ମଜ୍ଞାନର ଉତ୍ସ ଥିଲା, 'ବେଦାନ୍ତ' । ବେଦାନ୍ତ ଶବ୍ଦଟି କେବଳ 'ବେଦର ଅନ୍ତ'କୁ ବୁଝାଏ ନାହିଁ । ମାତ୍ର ଏହା ସହିତ ଉପନିଷଦ, ବ୍ରହ୍ମସୂତ୍ର ଓ ଭଗବଦ୍ ଗୀତାର ସ୍ୱାଧ୍ୟାୟରେ ଗ୍ରହଣ କରିଥାଏ । ଏହି ବେଦାନ୍ତ ଶବ୍ଦର ବ୍ୟାପକତା ଓ ବିଭିନ୍ନତା ମଧ୍ୟରେ ରହିଛି ବ୍ରହ୍ମ, ଈଶ୍ୱର, ଜୀବନ, ଆତ୍ମା, ମାୟା, ପୃଥିବୀ ପ୍ରଭୃତି ଅନେକ କିଛି ବିଷୟ ।ସେହିପରି ଶଙ୍କରାଚାର୍ଯ୍ୟଙ୍କର ଅଦ୍ୱୈତ ବେଦାନ୍ତ ଓ ରାମାନୁଜାଚାର୍ଯ୍ୟଙ୍କର ବିଶିଷ୍ଟାଦ୍ୱୈତ ପ୍ରଭୃତି ଭିନ୍ନ ଭିନ୍ନ ମତ ସହିତ ବାଦ ବିବାଦ ଦେଖିବାରୁ ମିଳିଥାଏ । ଏହାର ଏକ ସମନ୍ୱୟ କରି ଯେଉଁ ବେଦାନ୍ତ ସ୍ୱାମୀ ବିବେକାନନ୍ଦ ଆଜିର ଯୁଗରେ ପ୍ରସ୍ତୁତ କଲେ ତାହାର ନାମ ହେଲା – 'ନବବେଦାନ୍ତ ବା କର୍ମପରିଣତ ବେଦାନ୍ତ' (ପ୍ରାକ୍‌ଟିକାଲ ବେଦାନ୍ତ)

ସ୍ୱାମୀ ବିବେକାନନ୍ଦଙ୍କ ବେଦାନ୍ତର ବୈଶିଷ୍ଟ୍ୟ ହେଲା ସେ ଜଗତକୁ ମିଥ୍ୟା ବା ଅସତ୍ୟ ବୋଲି ମନେ କରି ଏହାକୁ ତ୍ୟାଗକରି ନିର୍ଜନରେ ମୁକ୍ତି ପାଇଁ ତପସ୍ୟା କରିବା ଅପେକ୍ଷା ବରଂ ଆମ ଘରିଦିଗରେ ରହିଥିବା ଜୀବନ୍ତ ଈଶ୍ୱର (ନର ହିଁ ନାରାୟଣ)ଙ୍କ ସେବା କରିବା ଅଧିକ ଶ୍ରେୟ ଅଟେ । ତେଣୁ ଏହି ପାପୀ ନାରାୟଣ, ତାପୀନାରାୟଣ ଓ ଦରିଦ୍ରନାରାୟଣଙ୍କ ସେବା କରିବା ପାଇଁ ବାରମ୍ବାର ସଂସାରରେ ଜନ୍ମ ଗ୍ରହଣ କରିବାକୁ ସ୍ୱାମୀଜୀ ଇଚ୍ଛା କରିଥିଲେ ।

ଅଦ୍ୱୈତବାଦୀ ସ୍ୱାମୀ ବିବେକାନନ୍ଦ ଯେତେବେଳେ ଜ୍ଞାନ ସହିତ କର୍ମର ସମନ୍ୱୟ କରି ତାହାକୁ ବ୍ୟବହାରିକ ଜୀବନରେ ପ୍ରୟୋଗ କରି ଜଗତର କଲ୍ୟାଣ ପାଇଁ ଆହ୍ୱାନ ଦେଉଛନ୍ତି, ସେତେବେଳେ ଶ୍ରୀ ଶଙ୍କରାଚାର୍ଯ୍ୟ ଓ ଶ୍ରୀରାମାନୁଜ ପ୍ରଭୃତି ବେଦାନ୍ତବାଦୀମାନେ କର୍ମପ୍ରତି ଉଦାସୀନ ହୋଇ ଜ୍ଞାନ ଓ ଭକ୍ତିପ୍ରତି ଗୁରୁତ୍ୱ ଦେଇଯାଇଛନ୍ତି । କର୍ମ ବ୍ୟତୀତ ମନୁଷ୍ୟ ଏହି ଜଗତରେ ବଞ୍ଚିରହିବା ଅସମ୍ଭବ । ତେଣୁ ଶ୍ରୀକୃଷ୍ଣ ଗୀତାରେ କହିଛନ୍ତି– "ନହି କଶ୍ଚିତ୍ କ୍ଷଣମପି ଜାତୁତିଷ୍ଠତ୍ୟ କର୍ମକୃତ । ଅର୍ଥାତ୍ କେହି କେବେହେଲେ କ୍ଷଣକାଳ ମଧ୍ୟ କର୍ମ ନକରି ରହିପାରେ ନାହିଁ । ଆମେ ସମସ୍ତେ କର୍ମକରିବାକୁ ବାଧ୍ୟ । ଗୀତାରେ କେବଳ ବେଦାନ୍ତ ତତ୍ତ୍ୱର ବର୍ଣ୍ଣନ ଓ ପ୍ରତିପାଦନ କରାଯାଇନାହିଁ, ବରଂ ତାହାର ବ୍ୟବହରିକ ଉପଯୋଗ ମଧ୍ୟ କରାଯାଇଛି । ଗୀତାରେ ଭଗବାନ ଶ୍ରୀକୃଷ୍ଣ ଜଗତକୁ ଅନିତ୍ୟ ବା ପରିବର୍ତ୍ତନଶୀଳ ବୋଲି କହିଛନ୍ତି । ମାତ୍ର କୌଣସିଠାରେ

ଆଚାର୍ଯ୍ୟ ଶଙ୍କରଙ୍କ ପରି ଅସତ୍ୟ ବୋଲି କହିନାହାନ୍ତି । ତେଣୁ ମନେହୁଏ ସ୍ୱାମୀ ବିବେକାନନ୍ଦ ଗୀତାର ଅଦ୍ୱୈତବାଦକୁ ତାଙ୍କ ଜୀବନ ଦର୍ଶନରେ ପ୍ରୟୋଗ କରିଅଛନ୍ତି । ମାତ୍ର ପ୍ରସ୍ଥାନତ୍ରୟୀ ଯଥା- ଉପନିଷଦ, ଗୀତା ଓ ବ୍ରହ୍ମସୂତ୍ର ଯେ ବେଦାନ୍ତର ମୂଳଗ୍ରନ୍ଥ ତାହା ସ୍ୱାମୀଜୀ ଉଲ୍ଲେଖ କରିଯାଇଛନ୍ତି ।

ସ୍ୱାମୀ ବିବେକାନନ୍ଦଙ୍କ ମତରେ ବର୍ତ୍ତମାନ ଅଦ୍ୱୈତବାଦକୁ କାର୍ଯ୍ୟରେ ପରିଣତ କରିବାର ସମୟ ଆସିଛି । ଏହାକୁ ବର୍ତ୍ତମାନ ସ୍ୱର୍ଗରୁ ମର୍ତ୍ତ୍ୟକୁ ନେଇ ଆସିବାକୁ ହେବ । ଅଦ୍ୱୈତବାଦର ରହସ୍ୟ ଏହି ଯେ- ଆମେ ସମସ୍ତେ ଏକ ସମସ୍ତେ ହିଁ ଈଶ୍ୱର । ନିମ୍ନତମ କୀଟ ଏବଂ ଉଚ୍ଚତମ ମନୁଷ୍ୟ ମଧ୍ୟରେ ସେହି ଏକ ଈଶ୍ୱରୀୟ ସତ୍ତାହିଁ ବିଦ୍ୟମାନ । ପ୍ରତ୍ୟେକଙ୍କୁ ନିଜଭଳି ଭଲପାଅ, କାରଣ ସମଗ୍ର ବିଶ୍ୱ ହିଁ ଏକ, ଏକମ୍ ସତ୍, ଏକବ୍ରହ୍ମ । ଏକ ଆତ୍ମା । ସବୁ ତାଙ୍କର ପ୍ରକାଶ । ଆତ୍ମା ଶୁଦ୍ଧ, ବୁଦ୍ଧ, ମୁକ୍ତ ଓ ନିରଞ୍ଜନ । ତେଣୁ ମୁକ୍ତିପାଇଁ ସାଧନା କରିବାର ଆବଶ୍ୟକ ନାହିଁ ।

ସ୍ୱାମୀ ବିବେକାନନ୍ଦ ବେଦାନ୍ତକୁ ଏକ ସାର୍ବଜନୀନ ଦର୍ଶନ ଭାବରେ ପରିଣତ କରିବାପାଇଁ ପ୍ରୟାସ କରିଯାଇଛନ୍ତି । ଶ୍ରୀରାମକୃଷ୍ଣ ପରମହଂସଙ୍କର ବୈଦାନ୍ତିକ ଚିନ୍ତା ଓ ଚେତନା ତାଙ୍କ ଭାବନାର ମୂଳଉତ୍ସ । ସ୍ୱାମୀଜୀ କେବଳ ବେଦାନ୍ତର ପ୍ରଚଳିତ ଭାଷା ଓ ଟୀକାକୁ ଗ୍ରହଣ ନକରି ତାହାକୁ କିପରି ମାନବ ଜୀବନର ବ୍ୟବହାରିକ ଧର୍ମ ଓ ଦର୍ଶନ ହୋଇପାରିବ ସେଥିପାଇଁ ଉପନିଷଦର ଚିରନ୍ତନ ସତ୍ୟକୁ ସାଧାରଣ ମନୁଷ୍ୟ ପାଇଁ ସହଜ, ସରଳ ଓ ବୋଧଗମ୍ୟ କରିପାରିଛନ୍ତି । ସ୍ୱାମୀଜୀ ତାଙ୍କ ଦର୍ଶନରେ 'ମାୟା' ଓ 'ବ୍ରହ୍ମ' ଅଧିକ ଗୁରୁତ୍ୱ ଆରୋପ ନକରି ତାହା ମଧ୍ୟରେ ରହିଥିବା ଦିବ୍ୟସତ୍ତା ଯେ ଆତ୍ମସ୍ୱରୂପ ତାହା ଗ୍ରହଣ କରିଛନ୍ତି । ସେ ଅଦ୍ୱୈତବାଦ ଏକ ନେତିବାଚକ ଦର୍ଶନରୁ ମୁକ୍ତ କରି ତାହାକୁ ଏକ ଇତିବାଚକ ଦର୍ଶନରେ ରୂପାନ୍ତର କରିଯାଇଛନ୍ତି । ଏହାଦ୍ୱାରା ଜଣେ ବ୍ୟକ୍ତି ଉପଲବ୍ଧ କରିପାରିବ ଯେ ତାର ସ୍ୱରୂପ ହିଁ ଏକ ଦିବ୍ୟ ସତ୍ତା ତେଣୁ ସାହସ, ଦମ୍ଭ ଓ ଆତ୍ମବିଶ୍ୱାସର ସହିତ ଜୀବନରେ ସମସ୍ୟା ଗୁଡିକର ସମ୍ମୁଖୀନ ହୋଇ ତାହାର ସମାଧାନର ମାର୍ଗ ବାହାର କରିପାରିବ । ତେଣୁ ସେ କହୁଥିଲେ ଆଗେଇଚାଲ । ଅନନ୍ତ ଶକ୍ତି, ଅସୀମ ସାହସ ଓ ଅଶେଷଧୈର୍ଯ୍ୟ ଆମ ଭିତରେ ରହିଛି, ତେଣୁ ଆମେ ଲକ୍ଷ୍ୟ ହାସଲ କରିବାକୁ ସମର୍ଥ ହୋଇ ପାରିବା ସେ ଉପନିଷଦର ବାଣୀକୁ ବାରମ୍ବାର କହୁଥିଲେ ଉତ୍ତିଷ୍ଠତ, ଜାଗ୍ରତ, ପ୍ରାପ୍ୟ ବରାନ୍ ନିବୋଧତ ଅର୍ଥାତ୍ ଉଠ, ଜାଗ ଏବଂ ଲକ୍ଷ୍ୟ ପୂରଣ ନହେବା ପର୍ଯ୍ୟନ୍ତ କାର୍ଯ୍ୟ କରିଯାଅ ।

ସ୍ୱାମୀଜୀ ତାଙ୍କର ଅଗ୍ନିବାଣୀରେ କହୁଥିଲେ ଅନ୍ୟ ଏକ ଉପନିଷଦର ଶବ୍ଦ । 'ଅଭୀଃ' 'ଅଭୀଃ' ଅର୍ଥାତ୍- ଭୟ କରନାହିଁ । ଅଦ୍ୱୈତବାଦ ଅନୁସାରେ ଆମ୍ଭେମାନେ ସେହି ପୂର୍ଣ୍ଣ ବ୍ରହ୍ମସ୍ୱରୂପ । ତେଣୁ ଆମେ ଆମର ସ୍ୱରୂପକୁ ମନେ ପକାଇ ନିଜକୁ ସିଂହପରି ଶକ୍ତିଶାଳୀ ହୋଇ ଶକ୍ତିର ସଦୁପଯୋଗ କରିବାକୁ ହେବ । ଭୟ, ଦୁର୍ବଳତା, ପାପ ଓ ମୃତ୍ୟୁ ଏହା ଅଦ୍ୱୈତ ବେଦାନ୍ତକୁ ଓ ନିଜର ଜୀବନକୁ ଶୈଳୀକୁ ବିରୋଧ କରେ । ତେଣୁ ଆମକୁ ଶକ୍ତିଶାଳୀ, ବୀର୍ଯ୍ୟଶାଳୀ ଓ ତେଜସ୍ୱୀ ହୋଇ ସମସ୍ତ କାର୍ଯ୍ୟକୁ ସମ୍ପାଦନ କରିବାକୁ ହେବ । ତାହେଲେ ଆମେ ଜୀବନର ଆଦର୍ଶ ଯଥା – ତ୍ୟାଗ ଓ ସେବାକୁ ପାଥେୟ କରିପାରିବା ।

'ଶିବଜ୍ଞାନେ ଜୀବସେବା' ଏହା ପ୍ରକୃତରେ ଠାକୁର ଶ୍ରୀରାମକୃଷ୍ଣ ପରମହଂସଙ୍କର ଉପଦେଶ ସ୍ୱାମୀଜୀଙ୍କ ନିମନ୍ତେ ଥିଲା । ତେଣୁ ସ୍ୱାମୀ ବିବେକାନନ୍ଦ, ନାରାୟଣ ସେବାରେ ନିଜକୁ ନିୟୋଜିତ କରିଥିଲେ । ସେ କହୁଥିଲେ 'ଶିବଜ୍ଞାନେ ଜୀବସେବା' କରିବା ଆମର ଧର୍ମ । ଗରୀବ, ଦୁଃଖୀ ଓ ଅସହାୟ ଲୋକମାନଙ୍କର

ସେବା ନିମନ୍ତେ ଆମ ମନରେ ତ୍ୟାଗ ଓ ନିଃସ୍ୱାର୍ଥପର ଭାବ ରହିବା ଆବଶ୍ୟକ । "ଜୀବ ହିଁ ଶିବ" ଏହି ଭାବ ଆସିଲେ ଆମେ ସର୍ବତ୍ର ବ୍ରହ୍ମ ଦର୍ଶନ କରପାରିବା ଏବଂ ବେଦାନ୍ତର ସର୍ବଂ ଖଲ୍ୱିଦଂ ବ୍ରହ୍ମ' ବା ଆତ୍ମବତ୍ ସର୍ବ ଭୂତେଷୁ' ଭାବ ସହଜରେ ଅନୁଭବ ହୋଇ ପାରିବ । ଆମେ ଯେତେବେଳେ ନିଜକୁ ପ୍ରଥମେ ବ୍ରହ୍ମ ବା ଈଶ୍ୱର ବୋଲି ମନେ କରିବା ସେତେବେଳେ ଆମ ମନରୁ ସଂକୀର୍ଣ୍ଣତା, ସ୍ୱାର୍ଥ, ହିଂସା, ପରଶ୍ରୀକାତରତା, ଗର୍ବ ପ୍ରଭୃତି ଆସୁରୀକ ଗୁଣ ଦୂର ହୋଇପାରିବ । ଏହାପରେ ଆମେ ସମାଜରେ ଅନ୍ୟାୟ, ଅନୀତି ଓ ଦୁର୍ନୀତି ପରି ମନ୍ଦଗୁଣର ଆଶ୍ରୟ ନେବୁନାହିଁ । ସମସ୍ତଙ୍କୁ ଭଗବାନ ଭାବରେ ଦେଖିବୁ । ସେତେବେଳେ ଆମ୍ଭମାନଙ୍କୁ ଆଉ ମନ୍ଦିରରେ ରହୁଥିବା କାଠ, ପଥର ଓ ବିଭିନ୍ନ ଧାତୁର ମୂର୍ତ୍ତି ପୂଜାରେ ଗୁରୁତ୍ୱ ନଦେଇ ଜୀବନ୍ତ ଦେବତା ଯେ ସ୍ୱୟଂ ଜୀବ ସେଥିପ୍ରତି ସେବା, ପ୍ରେମ, ଶ୍ରଦ୍ଧା ଓ ଭକ୍ତି ମାଧମରେ ଉପାସନା କରିବୁ । ସ୍ୱାମୀଜୀ କହୁଥିଲେ -

> ବହୁରୂପେ ସମ୍ମୁଖେ ତୁମର, ଛାଡି କାହୁଁ ଖୋଜୁଛ ଈଶ୍ୱର
> ଜୀବପ୍ରେମ କରେ ଯେଉଁ ଜନ, ସେହିଜନ ସେବଇ ଈଶ୍ୱର ॥

ସ୍ୱାମୀ ବିବେକାନନ୍ଦଙ୍କୁ ଆମେରିକାରେ ଜଣେ ପଚାରିଥିଲେ, ଏହି ବ୍ୟାବହାରିକ ବେଦାନ୍ତ କିପରି ସମାଜର ମଙ୍ଗଳ କରିପାରିବ ? ତା ଉତ୍ତରରେ ସ୍ୱାମୀଜୀ କହିଥିଲେ-ଯଦି ଜଣେ ଧୀବର ଭାବିବ ସେ ଜଣେ ଆତ୍ମା, ତାହେଲେ ସେ ଭଲ ଧୀବର ହୋଇପାରିବ, ଯଦି ଜଣେ ଛାତ୍ର ଭାବିବ ସେ ଜଣେ ଆତ୍ମା, ତାହେଲେ ସେ ଜଣେ ଭଲ ଛାତ୍ର ହୋଇପାରିବ, ଯଦି ଜଣେ ଓକିଲ ଭାବିବ ଯେ ମୁଁ ଜଣେ ଆତ୍ମା, ତାହେଲେ ସେ ଜଣେ ଭଲ ଓକିଲ ହୋଇପାରିବ ।

ଶ୍ରୀରାମକୃଷ୍ଣ ତାଙ୍କର ଶିଷ୍ୟମାନଙ୍କୁ 'ଚେତନାର ଜାଗ୍ରତ' ପାଇଁ ଯେଉଁ ଉପଦେଶ ଦେଇଥିଲେ ତାହାହିଁ ସ୍ୱାମୀ ବିବେକାନନ୍ଦଙ୍କର ୧୫୦ତମ ଜୟନ୍ତୀ ବର୍ଷରେ ବୈଦାନ୍ତିକ ଆହ୍ୱାନ-ଦିବ୍ୟମାନବ ହୁଅ ।

ଶ୍ରୀରାମକୃଷ୍ଣ ସତସଙ୍ଗ
ବିବେକାନନ୍ଦ ମାର୍ଗ, କୋରାପୁଟ - ୭୬୪୦୨୦
ମୋ :- ୮୯୦୮୭୮୮୧୪୧



# ଯୁଗାବତାର୍ ଶ୍ରୀରାମକୃଷ୍ଣଙ୍କର୍ ନରେନ୍ ଓ ତାଙ୍କର୍ ଯୁବସମାଜକୁ ଅବଦାନ

*ଡକ୍ଟର ପ୍ରଭାତୀ ମିତ୍ର (ଅଧ୍ୟାପିକା ବୋସ, କଟକ)*

ତ୍ରେତୟାରେ ଶ୍ରୀରାମଚନ୍ଦ୍ର ଦ୍ୱାପରରେ ଶ୍ରୀକୃଷ୍ଣଙ୍କ ପରି ଅତିଆଧୁନିକ ଯୁଗରେ ଶ୍ରୀରାମକୃଷ୍ଣ ମଧ୍ୟ ମନୁଷ୍ୟ ଦେହ ଧରି ଧରାପୃଷ୍ଠରେ ଅବତୀର୍ଣ୍ଣ ହୋଇଥିଲେ । ମନୁଷ୍ୟପରି ଆଚରଣ, ହସ, କାନ୍ଦ, କ୍ଷୁଧା-ତୃଷ୍ଣା, ପଡିଯାଇ ହାତଭାଙ୍ଗିବା ଓ ଶେଷରେ ଗଳାରେ କର୍କଟ-ସବୁକିଛି ମନୁଷ୍ୟପରି, ମାତ୍ର-ଜ୍ଞାନୀଶ୍ୱର ।

ଅନ୍ୟାନ୍ୟ ଅବତାରରେ ଆମେ ଦେଖୁ ସାଧୁମାନଙ୍କୁ ପରିତ୍ରାଣ ଦେବା ନିମନ୍ତେ ଅସୁରନିଧନ, ବା ଦୁଷ୍କୃତି ନାଶନ ଓ ଧର୍ମସଂସ୍ଥାପନ କିନ୍ତୁ ଶ୍ରୀରାମକୃଷ୍ଣଙ୍କର ବିଶେଷ ଉଦ୍ଦେଶ୍ୟ – ଜ୍ଞାନୀ, ମୂର୍ଖ, ଦରିଦ୍ର, ଧନୀ, ମୋଚି, ମେହେନ୍ତର, ପାପୀ-ତାପୀ ସମସ୍ତଙ୍କ ମଧ୍ୟରେ ଭଗବତ୍ ପ୍ରେମର ସଞ୍ଚରଣ । ସ୍ୱାମୀଜୀଙ୍କ ମତରେ ସେ ହେଉଛନ୍ତି 'ଚିର ଉନ୍ମଦ ପ୍ରେମପାଥାର' । ସମସ୍ତଙ୍କୁ ଭଗବତ୍ ପ୍ରେମ ସଞ୍ଚରଣ କରିଦେବା ନିମନ୍ତେ ବିଶେଷ ଉତ୍ସାହୀ ଓ କରିନପାରିବା ପର୍ଯ୍ୟନ୍ତ ନିଜ ମଧ୍ୟରେ ବେଦନା ଅନୁଭବ କରୁଛନ୍ତି ।

ତାଙ୍କର ବାଣୀ 'ଶିବଜ୍ଞାନେ ଜୀବସେବା' ଅର୍ଥାତ୍- "ଜୀବ ମଧ୍ୟେ ଶିବ" କଥାଟିକୁ ଲୋକଙ୍କ ସମ୍ମୁଖରେ ତୋଳି ଧରିଥିଲେ ଯାହାକୁ ପରବର୍ତ୍ତୀ କାଳରେ ସ୍ୱାମୀ ବିବେକାନନ୍ଦ ତାଙ୍କର ସମସ୍ତ ପ୍ରକାର ଚିନ୍ତାଧାରାରେ ଏହି ଗୂଢତତ୍ତ୍ୱଟିକୁ ମୂଳମନ୍ତ୍ର ଧରି ବହୁପ୍ରକାର ସମସ୍ୟା ଦେଶ ତଥା ବିଦେଶରେ ସମାଧାନ କରିଦେଇ ପାରିଥିଲେ, ବିଶେଷ କରି ତାଙ୍କର ଅନ୍ତରର ସୂକ୍ଷ୍ମଦୃଷ୍ଟି ଯୁବ ସମାଜ ଉପରକୁ ନିକ୍ଷେପ କରି ସମଗ୍ର ଭାରତମାତାର କିପରି ପୁର୍ନଜାଗରଣ ହୋଇପାରିବ ସେଥିପ୍ରତି ବିଶେଷ ଯତ୍ନବାନ ହୋଇଥିଲେ ।

ଶ୍ରୀରାମକୃଷ୍ଣ ଦେବ ଯନ୍ତ୍ରୀ ଓ ସ୍ୱାମୀ ବିବେକାନନ୍ଦ ଯନ୍ତ୍ର । ତେବେ ଯନ୍ତ୍ରୀ ହିସାବରେ ଶ୍ରୀରାମକୃଷ୍ଣଦେବ, ଯନ୍ତ୍ର ସ୍ୱାମୀବିବେକାନନ୍ଦଙ୍କୁ ସମାଧିସ୍ଥ ଅବସ୍ଥାରୁ ଅର୍ଥାତ୍ ମୁଦ୍ରିତ ଚକ୍ଷୁରେ ଦିବ୍ୟାନନ୍ଦରେ ତରଳିଯିବାର ସାଧନାରୁ ଚକ୍ଷୁ ଉନ୍ମୀଳିତକରି ସର୍ବତ୍ର ବ୍ରହ୍ମଦର୍ଶନ କରିବା ନିମନ୍ତେ ଶିଖାଇ ଦେଇଥିଲେ, ଏବଂ ସ୍ୱାମୀଜୀଙ୍କ ପରି ଜଣେ ବ୍ରହ୍ମଜ୍ଞାନୀଙ୍କୁ ଏପରି ଭାବରେ ପ୍ରେମରସରେ ନିମଜ୍ଜିତ କରିଦେଇଥିଲେ ଯେ ପରବର୍ତ୍ତୀ କାଳରେ ଖୁବ ସହଜ ଭାବରେ ସଭା-ସମିତିଠାରୁ ଆରମ୍ଭ କରି ଲୋକଙ୍କ ଘରେ ଘରେ ବ୍ୟଷ୍ଟିତଥା ସମଷ୍ଟି ଜୀବନରେ ଉପୁଜୁଥିବା ଜୀବନର ସମସ୍ୟା ଗୁଡିକ ବିଚାର କରି ସମାଧାନ କରିବାରେ ସାହାଯ୍ୟ କରିଛି । ସ୍ୱାମୀଜୀଙ୍କର ବ୍ରହ୍ମଜ୍ଞାନହିଁ ସମାଜତନ୍ତ୍ରର ସାମାଜିକରୂପ ଯେଉଁଥିରେ ରାଜନୀତି ବା ଅର୍ଥନୀତି ନାହିଁ । କେବଳ ଭରି ରହିଛି ମର୍ମନୀତି, ଧର୍ମନୀତି, ଆତ୍ମନୀତି ତଥା ମୋକ୍ଷନୀତି । ଏହା ଶ୍ରୀରାମକୃଷ୍ଣ ଦେବଙ୍କ ନିମନ୍ତେ ସମ୍ଭବପର ହୋଇଛି । କାରଣ ସେ ଈଶପ୍ରେମ ସଂବହନର ଏକ ଭଙ୍ଗୀ ସଦୃଶ୍ୟ, ଏହାହିଁ ହେଉଛି ଶ୍ରୀରାମକୃଷ୍ଣଙ୍କର ଆଧୁନିକତା । କେବଳ ନିଜ ଦେଶ ମଧ୍ୟରେ ଯନ୍ତ୍ର-ସ୍ୱାମୀ ବିବେକାନନ୍ଦଙ୍କର କାର୍ଯ୍ୟକାରିତା ଆବଦ୍ଧ ନରହୁ ସେଥି ନିମନ୍ତେ ଶ୍ରୀରାମକୃଷ୍ଣ ଯତ୍ନଶୀଳ ହୋଇଥିଲେ ଅର୍ଥାତ- ଏହି ଜୀବ-ଶିବ ତତ୍ତ୍ୱର ପ୍ରଚାର ଅନ୍ତରୁ ଅନନ୍ତ, କ୍ଷୁଦ୍ରରୁ ଭୂମା ଗୃହରୁ ବିଶ୍ୱ ଓ 'ମୁଁ'କୁ 'ତୁମେ' ପର୍ଯ୍ୟନ୍ତ ଉର୍ତ୍ତୀର୍ଣ୍ଣ କରାଇଦେବାର ଅଗ୍ନିଦୀକ୍ଷା ସ୍ୱାମିଜୀ

ଗ୍ରହଣ କରିଥିଲେ ଏବଂ ତାଙ୍କରି ଭାଷାରେ 'ଚିରଉନ୍ମଦ ପ୍ରେମପାଥାର'ର ତରଙ୍ଗ ତାଙ୍କୁ ବାରମ୍ବାର ଏପରି ଭାବରେ ଆନ୍ଦୋଳିତ କରିଥିଲା ଯେ ସେ ପାଖରେ ଜନ୍ମଗ୍ରହଣ କରି ମଧ୍ୟ ପାଶ୍ଚାତ୍ୟ ଦେଶ ନିମନ୍ତେ ପରମଦୟାଳୁ ସାଜି ବିଜାତି ମାନଙ୍କୁ ଏକାନ୍ତ ନିଃସ୍ୱାର୍ଥ ଭାବରେ 'ଆତ୍ମଜ୍ଞାନ'ର କଥା ଶୁଣାଇ ସେମାନଙ୍କ ମଧ୍ୟରେ ସୁପ୍ତଆତ୍ମାଙ୍କୁ ଜାଗ୍ରତ କରିଥିଲେ ବିଶ୍ୱମାନବର ମହାସୌଭାଗ୍ୟ ଯେ ବିବେକାନନ୍ଦ 'ଫକୀର' ଙ୍କ ଠାରୁ ଯେଉଁ ପ୍ରେମ ପାଇଥିଲେ ତାହାକୁ ଜଗତବାସୀଙ୍କ ମଧ୍ୟରେ ବାଣ୍ଟି ଦେଇଥିଲେ କାରଣ ସେ ଜାଣିଥିଲେ ଯେ ଏହି ଈଶପ୍ରେମ କୌଣସି ପ୍ରକାର ଗଣ୍ଡିରେ ଆବଦ୍ଧ ରହିବାର ସାମଗ୍ରୀ ନୁହେଁ । ଏହାର ପ୍ରବାହ ହେଲେ ଯାଇ ବିଶ୍ୱମାନବର କଲ୍ୟାଣ ହୋଇପାରିବ । ଏ ବିଶ୍ୱରେ ସବୁକିଛି ତରଙ୍ଗ, କୌଣସି କିଛି କଠିନ ନୁହେଁ । ତେଣୁ ପ୍ରତି ମନୁଷ୍ୟ ମଧ୍ୟରେ ଏହି ସଦ୍‌ଭାବନାର ତରଙ୍ଗ ପ୍ରବାହିତ ହେଲେ ଯାଇ ମନୁଷ୍ୟର ମନ ସତ୍‌ଚିନ୍ତା ପଛରେ ଅଗ୍ରସର ହେବ ।

ଏହା ମଧ୍ୟରେ ଏକତଥ୍ୟ ଅନ୍ତର୍ନିହିତ ମନୁଷ୍ୟ ଜୀବନର ଅସଲ ଉଦ୍ଦେଶ୍ୟ ଭଗବତ ଲାଭ ଏବଂ ସ୍ୱାମୀଜୀଙ୍କ ମତରେ ମନୁଷ୍ୟ ଏହି ଉଦ୍ଦେଶ୍ୟ ସାଧନ କରିବ, ଯଦି ସେ ନିଃସ୍ୱାର୍ଥପର ହୋଇ ମାନବ କଲ୍ୟାଣର୍ଥେ କାର୍ଯ୍ୟ କରିବା ତାର ଜ୍ଞାନ ହେବ, ଅର୍ଥାତ୍ ଈଶ୍ୱର ହିଁ ବସ୍ତୁ ଆଉ ସବୁ ଅବସ୍ତୁ । ଧର୍ମୀୟ ଜଗତରେ ଯେଉଁ ତିନିଜଣ ମହାମନିଷୀ ଦେଖାଯାନ୍ତି ଯଥାବୁଦ୍ଧ, ଶଙ୍କରାଚାର୍ଯ୍ୟ ଓ ସ୍ୱାମୀବିବେକାନନ୍ଦ - ସେଥିରେ ଦେଖାଯାଏ ବୁଦ୍ଧଦେବଙ୍କର ହୃଦୟବତ୍ତା, ଶଙ୍କରାଚାର୍ଯ୍ୟଙ୍କର ଜ୍ଞାନ ନେଇ ସ୍ୱାମୀଜୀ ଧରାପୃଷ୍ଠକୁ ଆସିଥିଲେ ।

ଏହି ପରିପ୍ରେକ୍ଷୀରେ ଯଦି ଆମେ ଲକ୍ଷ୍ୟକରିବା ତେବେ ଦେଖିବା ସ୍ୱାମୀଜୀ ବାରମ୍ବାର କର୍ମ ମାଧ୍ୟମରେ 'ମୋକ୍ଷ' ବା ଆତ୍ମାର ମୁକ୍ତି ସମ୍ଭବ ବୋଲି କହୁଛନ୍ତି । ସ୍ୱାମୀଜୀ କହନ୍ତି ଜନ୍ମ ଯେପରି ସତ୍ୟ ମୃତ୍ୟୁ ମଧ୍ୟ ସେହିପରି ସତ୍ୟ ଏବଂ ମୃତ୍ୟୁ ଯେତେବେଳେ ଅନିବାର୍ଯ୍ୟ ସେତେବେଳେ ଚିନ୍ତା କରି ଲାଭ କ'ଣ-ପରର କଲ୍ୟାଣାର୍ଥେ କର୍ମ କରି ଗୋଟିଏ ଦାଗ ରଖିଯାଅ । କିନ୍ତୁ କର୍ମ ଯେପରି ନିଃସ୍ୱାର୍ଥପର ଭାବେ ହୁଏ । ଶଙ୍କରାଚାର୍ଯ୍ୟ ଓ ସ୍ୱାମୀବିବେକାନନ୍ଦଙ୍କର ମତରେ କର୍ମର 'ସଂଜ୍ଞା'ଭିନ୍ନ ନୁହେଁ କିନ୍ତୁ ସେମାନେ ଦୁହେଁ ବିଭିନ୍ନ ଦିଗରୁ ଉପସ୍ଥାପନା କରିଛନ୍ତି । ଶଙ୍କରାଚାର୍ଯ୍ୟଙ୍କ ମତରେ କର୍ମ ଓ ଜ୍ଞାନର ସଂଯୋଗକରଣ ଠିକ୍ ନୁହେଁ । କିନ୍ତୁ ସ୍ୱାମୀବିବେକାନନ୍ଦ କହନ୍ତି ବାସ୍ତବ କ୍ଷେତ୍ରରେ ଉଭୟ କର୍ମ ଓ ଜ୍ଞାନର ବିକଳ୍ପର ସଂଯୋଗଦ୍ୱାରା ମୁକ୍ତିଲାଭ ଅବଶ୍ୟମ୍ଭାବୀ- ସେ ସରଳ ଭାବରେ ବୁଝାଇଛନ୍ତି ଭଗବାନଙ୍କ ଆଡକୁ ମନରଖି ଭକ୍ତି ଭାବ ଲାଭ କରି ଅର୍ଥାତ୍- ଈଶ୍ୱର ହିଁ ସତ୍ୟ ଓ ସମସ୍ତଙ୍କ ମଧ୍ୟରେ ସେହି ଏକ ବ୍ରହ୍ମ ବିରାଜିତ ଜାଣି ନିଃସ୍ୱାର୍ଥପର ଭାବେ କର୍ମ କରିଯାଅ ଯାହାକି ତୁମକୁ ମୁକ୍ତିର ପଥ ଦେଖାଇବ ।

ଶ୍ରୀକୃଷ୍ଣ ଭଗବତ୍ ଗୀତାରେ ମଧ୍ୟ କହିଛନ୍ତି ଯିଏ ମୋତେ ପୂଜା କରେ ଓ ତାର କର୍ମ କରିବାରେ କୌଣସି ହେଳା ନକରେ ଓ କର୍ମଫଳରେ ଆଶାରଖେ ନାହିଁ, ସେ ମୋର ଖୁବ୍‌ନିକଟତମ, ତେବେ ସ୍ୱାମୀଜୀ ଏହି କର୍ମଯୋଗକୁ ବହୁ ଭାବରେ ବିସ୍ତୃତ କରିଛନ୍ତି ।

ଦେଖାଯାଏ ସବୁ ଆଚାର୍ଯ୍ୟ ତଥା ମାତା, ପିତା, ଗୁରୁ ଅନ୍ୟମାନଙ୍କୁ ଉପଦେଶ ଦିଅନ୍ତି ଯେ ଚୌର୍ଯ୍ୟବୃତ୍ତି ଅବଲମ୍ବନ କରନାହିଁ, ସତ୍ୟକଥା କହ । ଅସଦାଚରଣ କରନାହିଁ, କିନ୍ତୁ କେହି କେବେହେଲେ କହନ୍ତି ନାହିଁ ଯେ କ'ଣ କଲେ ମିଥ୍ୟା କଥା କହିବା ବା ଅସଦାଚରଣ ପ୍ରତି ମନଯିବନାହିଁ ।

ଏହି କଥାଟି ସ୍ୱାମୀବିବେକାନନ୍ଦ ଖୁବସୁନ୍ଦର ଭାବେ ଯୁବଗୋଷ୍ଠୀଙ୍କ ଉଦ୍ଦେଶ୍ୟରେ ଉପସ୍ଥାପନ କରିଛନ୍ତି । "ନିଃସ୍ୱାର୍ଥ କର୍ମ ମାଧ୍ୟମରେ ମୁକ୍ତି ଲାଭ" । ଏହି ନିଃସ୍ୱାର୍ଥପର ଭାବପୋଷଣ କରି କାର୍ଯ୍ୟକରିବା ଏତେ ସହଜ ନୁହେଁ । ସାଧାରଣ ଭାବେ ଦେଖାଯାଉଛି ଆଜିର ଯୁବପୀଢ଼ି ତାଙ୍କର ଭବିଷ୍ୟତ ଅସୁରକ୍ଷିତ ଜାଣିପାରି ହିଂସାତ୍ମକ ଆଚରଣକୁ ଆଦରି ନେଉଛନ୍ତି । ସେମାନଙ୍କୁ 'ଭୟ' ଦିନକୁ ଦିନ ଦୁର୍ବଳ କରିପକାଉଛି । ସେମାନେ ଭଲ ମନ୍ଦ ବା ଭୁଲ ଠିକ୍ ମଧ୍ୟରେ ପାର୍ଥକ୍ୟ ଜାଣିପାରୁନାହାନ୍ତି ଏବଂ କ୍ରୋଧର ବଶବର୍ତ୍ତୀ ହୋଇ ବିଭିନ୍ନ ପ୍ରକାର ଭ୍ରଷ୍ଟାଚାରରେ ଲିପ୍ତ ହେଉଛନ୍ତି ତାହାର ପ୍ରଥମକାରଣ ଅବିକଶିତ ବ୍ୟକ୍ତିତ୍ୱ ଦ୍ୱିତୀୟ କାରଣଟି ହେଲା ବସ୍ତୁବାଦୀ ଜଗତରେ ପ୍ରତିଟି ମନୁଷ୍ୟ ଅପର ମନୁଷ୍ୟ ସହ ସଂପର୍କ ରଖିବାକୁ ପସନ୍ଦ ନକରି ବସ୍ତୁ ବା ଯନ୍ତ୍ର ଯଥା ଟିଭି, ମୋବାଇଲ, ଲ୍ୟାପ୍‌ଟପ ଅଥବା କମ୍ପୁଟର ସହ ସଂପର୍କ ରଖିବା ନିମନ୍ତେ ପସନ୍ଦ କରି ରାତାରାତି ଧନୀ ହେବାର ସ୍ୱପ୍ନ ଦେଖୁଛନ୍ତି ।

ଅପରପକ୍ଷରେ ଦେଖାଯାଉଛି ପ୍ରତି ପିତାମାତା ଓ ଶିକ୍ଷକମାନେ ମଧ୍ୟ ପିଲାଟିଏ କିପରି ପାଠପଢ଼ି ଡାକ୍ତର, ଇଂଜିନିୟର ଓକିଲ ବା ଆଇଏସ ଅଫିସର ହେବ ସେ ବିଷୟରେ ଯତ୍ନଶୀଳ ହୋଇ ସେ କିପରି ଖାଇବ, କିପରି ଚାଲିବ, କିପରି ଖେଳିବ ଓ ଜୀବନକୁ ଉପଭୋଗ କରିବ ସେସବୁ ଶିଖାଉଛି କିନ୍ତୁ କିପରି ଗୋଟିଏ ଭଲ ମଣିଷଟିଏ ହୋଇ ଅନ୍ୟ ନିମନ୍ତେ ସୁଚିନ୍ତା କରିବ, ତାହା ଶିଖାଉ ନାହାନ୍ତି ।

ପ୍ରତି ସାଧାରଣ ବ୍ୟକ୍ତିଙ୍କର ଏହା ଜାଣିବା ଉଚିତ୍-ଯେ ଚିନ୍ତା ଅଥବା ଭାବନାରୁ ଅନୁଭବ ସୃଷ୍ଟି, ଅନୁଭବରୁ ଦୃଷ୍ଟିକୋଣ, ଦୃଷ୍ଟିକୋଣରୁ କାର୍ଯ୍ୟ, କାର୍ଯ୍ୟରୁ ଅଭ୍ୟାସ ଓ ଅଭ୍ୟାସରୁ ବ୍ୟକ୍ତିତ୍ୱର ସୃଷ୍ଟି, ସ୍ୱାମୀଜୀ କହନ୍ତି ଏହା ଏକ କ୍ରମଧାରା ଅର୍ଥାତ୍ ଆମେ ଯେଉଁ ପ୍ରକାର ଅନ୍ୟ ପ୍ରତି ଭାବନା ପୋଷଣ କରିବା, ସେହିପରି ଅନ୍ତର ମଧ୍ୟରେ ଅନୁଭବ କରିବା ଭାବନା ଦୁଇ ପ୍ରକାରର (୧) ସକାରାତ୍ମକ, (୨) ନକାରାତ୍ମକ । ଯଦି ଆମେ କାହାପ୍ରତି ନକାରାତ୍ମକ (Negative thought) ପ୍ରତିପୋଷଣ କରୁ ତେବେ ଅନ୍ୟର କ୍ଷତି ହେଉବା ନହେଉ ନିଜର ବହୁତ କ୍ଷତି ହୁଏ । ତେଣୁ ଅନ୍ୟପ୍ରତି ସକାରାତ୍ମକ ଭାବନା ପୋଷଣ କରିବା ଏକ ଉତ୍ତମ ବ୍ୟକ୍ତିତ୍ୱର ପରିଚୟ ହେବ ।

ଏହି ସକାରାତ୍ମକ ଭାବନା ଅନ୍ୟପ୍ରତି ପୋଷଣ କରିବା ଅଥବା ନିଃସ୍ୱାର୍ଥପର ହୋଇ ଅପରର କଲ୍ୟାଣ ସାଧନରେ ବ୍ରତୀହେବା ଏହା । ଏତେ ସହଜ ନୁହେଁ, ଏଥି ନିମନ୍ତେ ଆଧ୍ୟାତ୍ମିକ ଜୀବନ ଯାପନ କରିବା ଉଚିତ୍ ।

ଆଜିର ଯୁବସମାଜ ଟିକିଏ ସମସ୍ୟାରେ ବିଚଳିତ ହୋଇପଡୁଛନ୍ତି । ନିଜକୁ ନିଃସଙ୍ଗ ମନେ କରି

ମାନସିକ ଭାରସାମ୍ୟ ହରାଇବସି ନିଜର କ୍ଷତି କରିବା ସହ ସ୍ଥଳ ବିଶେଷରେ ଅପରର ମଧ୍ୟ କ୍ଷତି କରିବାକୁ ପଛଘୁଞ୍ଚା ଦେଉନାହିଁ । ତେବେ ଗୋଟିଏ କଥା ଯୁବପିଢୀଙ୍କର ଭଲଭାବରେ ଜାଣିବା ଦରକାର ଜୀବନ ଓ ସମସ୍ୟା ମଧ୍ୟରେ ଜୀବନ ହିଁ ଶ୍ରେଷ୍ଠ, କାରଣ ଏହି ଜୀବନରେ ଭଗବତଲାଭ କରିହେବ । କାରଣ ଏହା ଦୁର୍ଲ୍ଲଭ, ସମସ୍ୟା ଆସିବ ଏବଂ ଯିବ । ତେଣୁ ସମସ୍ୟା ଆସିଲେ ବିଚଳିତ ନହୋଇ ଏହାର ଅସ୍ତିତ୍ୱକୁ ସହଜ ସରଳଚିତ୍ତରେ ସ୍ୱୀକାର କରିବ ଓ ଏହାକୁ ଆପଣାର କରିନେଇ ତାର ଗଭୀରତାକୁ ମାପିବ ଓ ତାକୁ ସାମନା କରିବା ନିମନ୍ତେ ନିଜକୁ ପ୍ରସ୍ତୁତ କରିବ ।

ଏହିପରି ଭାବରେ ନିଜକୁ ପ୍ରସ୍ତୁତ କରିବା ନିମନ୍ତେ ଆଜିର ଯୁବପୀଢିଙ୍କୁ ଯୋଗାସନ, ପ୍ରାଣାୟାମ, ଜପ, ଧ୍ୟାନ ନିୟମିତ ଭାବରେ କରିବାକୁ ପଡିବ । ଏଠାରେ ପର୍ବତ୍ରତା ସ୍ୱରୂପିଣୀ ମା ସାରଦା ଦେବୀ କହନ୍ତି ଏକାଦି କ୍ରମେ ଧ୍ୟାନ-ଜପ କରିଲେ ମନ ଶାନ୍ତ ହୁଏ ଓ ସକାରାତ୍ମକ ଭାବନା ଆସେ ଶ୍ରୀ ଶ୍ରୀ ଠାକୁର ମଧ୍ୟ ବାରମ୍ବାର କଥାମୃତରେ କହିଛନ୍ତି । ଧ୍ୟାନ-ଜପ କରିବା ଭଲ ଓ ଏହି ସମୟରେ ଜଣେ ଭଗବାନଙ୍କ ପାଦପଦ୍ମରେ ନିଜର ମନକୁ ଅର୍ପଣ କରିବା ଦରକାର ଧ୍ୟାନ ଜମିଗଲେ ଇନ୍ଦ୍ରିୟଗୁଡିକ ତାଙ୍କର କାର୍ଯ୍ୟକଳାପ ବନ୍ଦ କରିଦିଅନ୍ତି ଓ ମନ ଅନ୍ତର୍ମୁଖୀ ହୁଏ ଏବଂ ନିଜେ କେବଳ ଦେହ ନୋହୁ ଆମେ ଆତ୍ମା ତାହା ଉପଲବ୍ଧି କରିହୁଏ ।

ତେଣୁ ଏହି ସବୁ ପ୍ରକାର କଥାକୁ ଆଖି ସାମନାରେ ରଖି ସ୍ୱାମୀଜୀ କହନ୍ତି ଆଧ୍ୟାତ୍ମିକ ଜୀବନ ଯାପନ କରିବା ନିହାତି ଜରୁରୀ ଏଥିନିମନ୍ତେ ଜପ-ଧ୍ୟାନରେ ଆବଶ୍ୟକ ଏପରି କରିବା ଦ୍ୱାରା ଆମ ମଧ୍ୟରେ ଥିବା ଆତ୍ମା ତା'ର ଦିବ୍ୟତ୍ୱ ବିଷୟରେ ଜାଣିପାରେ । ଏଥିନିମନ୍ତେ ବହିଃର୍ଜଗତର କୌଣସି ସାହାଯ୍ୟ ଦରକାର ହୁଏ ନାହିଁ । ଧ୍ୟାନ କରିବା ପଛରେ ସବୁଠାରୁ ଗୁରୁତ୍ୱପୂର୍ଣ୍ଣ ତଥ୍ୟ ହେଲା ମନୁଷ୍ୟର ମନହିଁ ଧ୍ୟାନରେ ଲିପ୍ତହୁଏ । ଆମର ଦୈନନ୍ଦିନ ଜୀବନରେ ଏହା ଗୋଟିଏ ମୁହୂର୍ତ୍ତ ଯେଉଁଠାରେ କି ଆତ୍ମଚିନ୍ତନ ହୋଇପାରେ ।

ତେଣୁ ସ୍ୱାମୀଜୀ ବାରମ୍ବାର କହୁଛନ୍ତି- ତୁମେ ଅଯଥା କଥାବାର୍ତ୍ତା କରି ସମୟ ନଷ୍ଟ କରନାହିଁ । ମନକୁ ଶାନ୍ତ ରଖି ଜପ-ଧ୍ୟାନ କର । ଏଥିରେ ତୁମ ମନ ମଧ୍ୟରେ ସକାରତ୍ମକ ଭାବନା ବା (Positive thought) ଉଦ୍ରେକ ହେବ ।

ଆଜିର ସମାଜରେ ଯେଉଁପରି ଘଟଣାମାନ ଆମର ପରିସ୍ଥିତି ଓ ପରିବେଶରେ ଘଟୁଛି ତାହା ଖବର କାଗଜ ଦୂରଦର୍ଶନ ମାଧ୍ୟମରେ ଆମ ନିକଟକୁ ଆସୁଛି ଓ ମନକୁ ନକାରାତ୍ମକ (Negative thought)ର କମ୍ପନ ତଥା ଭାବନାରେ କ୍ରମାଗତ ଭାବରେ ପରିପୂର୍ଣ୍ଣ କରିଦେଉଛି । ଏହି ସବୁ ସୂଚନା ମସ୍ତିଷ୍କର ସମଗ୍ର କୋଷକୁ ଅକ୍ତିଆର କରି ନେଉଛି ଓ ସ୍ନାୟୁ ମାଧ୍ୟମରେ ସମଗ୍ର ଶରୀରକୁ ସେହିବାର୍ତ୍ତା ପ୍ରେରଣ କରିଦେବା ଦ୍ୱାରା ମନ ଆର୍ବର୍ଜ୍ଜନାପୂର୍ଣ୍ଣ ଚିନ୍ତାଧାରାରେ କରାଗତ ହେଉଛି । ପ୍ରଶ୍ନ ଉଠୁଛି ଆମେ ଏହି ପରିବେଶରେ ସକାରାତ୍ମକ ଚିନ୍ତା ବା ଉତ୍ତମ ଚିନ୍ତା କିପରି କରିପାରିବ ? ଆମେ ସାଧାରଣ ମନୁଷ୍ୟ ପରିସ୍ଥିତି ବା ପରିବେଶକୁ ବଦଳାଇ ଦେଇପାରିବା ନାହିଁ ।

କିନ୍ତୁ ନିଜର ଚିନ୍ତାଧାରାକୁ ତ ବଦଳାଇ ଦେଇପାରିବା, କାରଣ ମାନବ ଚେତନା ଏକ ପରମାଣୁ

(atom) ସଦୃଶ୍ୟ ଗୋଟିଏ ପରମାଣୁର ନାଭିକେନ୍ଦ୍ର ବା (nucleus) ରେ ରହିଥାଏ ପ୍ରୋଟନ- ପଜିଟିଭ ଚାର୍ଜ ଓ ନ୍ୟୁଟ୍ରନ-ଶୁନ୍ୟଚାର୍ଜ ଏବଂ ନାଭିକେନ୍ଦ୍ରର ପରିଧିରେ ରହିଥାଏ ଇଲେକଟ୍ରନ-ନେଗେଟିଭ ଚାର୍ଜ, ସାମାନ୍ୟ ଶକ୍ତି ବା (energy) ପ୍ରୟୋଗ କଲେ ଯେପରି ପରମାଣୁରୁ ଇଲେକଟ୍ରନ ବାହାରିଯାଇ ପଜିଟିଭ ଚାର୍ଜ ରହିଯାଏ, ଠିକ୍ ସେହିପରି ମାନବଚେତନାର କେନ୍ଦ୍ରରେ ସକାରାତ୍ମକ ଭାବନା ତଥା ସଦଗୁଣ ଓ ବାହ୍ୟସ୍ତରରେ ନକାରାତ୍ମକ ଭାବନା ଭରିରହିଥାଏ ସାମାନ୍ୟ ଶକ୍ତି ତଥା କ୍ରମାଗତ ଯୋଗାସନ, ପ୍ରାଣାୟାମ, ଜପ, ଧ୍ୟାନ କରିବା ଦ୍ୱାରା ମନୁଷ୍ୟ ମନରୁ ନକାରାତ୍ମକ ଭାବନା ଚାଲିଯାଏ ଓ ମନ ସକାରାତ୍ମକ ଭାବନାରେ ପରିପୂର୍ଣ୍ଣ ହୁଏ । ଏହି ସକାରାତ୍ମକ ଭାବନା ଅନ୍ୟପ୍ରତି ପୋଷଣ କରିଲେ ମନୁଷ୍ୟ ନିଃସ୍ୱାର୍ଥପର ହୁଏ ଓ ମନୁଷ୍ୟ ମନରେ ଶକ୍ତିର ଅଭ୍ୟୁଦୟ ଘଟିଥାଏ । ଏହାଦ୍ୱାରା ପରବର୍ତ୍ତୀ ସ୍ତରରେ ଏକ ବଳିଷ୍ଠ ବ୍ୟକ୍ତିତ୍ୱ ଜନ୍ମନିଏ । ଯଦି ଏପରି ସ୍ୱଭାବର ବ୍ୟକ୍ତିତ୍ୱ ଏକତ୍ରିତ ହୁଅନ୍ତି ତେବେ ଦେଶ ଓ ଜାତିର ପୁନର୍ଗଠନ ଅବଶ୍ୟମ୍ଭାବୀ ।

ତେଣୁ ଆଜିର ପ୍ରତ୍ୟେକ ଯୁବକ ଯୁବତୀ ଯଦି ସ୍ୱାମୀଜୀଙ୍କର ପ୍ରଦର୍ଶିତ ଏହି ପଥକୁ ବରଣ କରିନେଇ ନିଜ ମଧ୍ୟରେ ଥିବା ବ୍ୟକ୍ତିତ୍ୱକୁ ପ୍ରସାର କରନ୍ତି ତେବେ ଭାରତ ମାତା ତାର ଗତଗୌରବ ମୃତ ଗୌରବ ତଥା ହୃତଗୌରବ ନିଷ୍ଠୟ ଫେରି ପାଇବ ଓ ବ୍ୟକ୍ତି ବିଶେଷ ମୁକ୍ତି ପଥରେ ଅଗ୍ରସର ହେବ ।

ଅଧ୍ୟାପିକା, ଗଣିତ ଓ ବିଜ୍ଞାନ ବିଭାଗ
ଭୁବନାନନ୍ଦ ଓଡିଶା ସ୍କୁଲ ଅଫ୍ ଇଞ୍ଜିନିୟରିଂ, କଟକ



# ଭିକାରୀ ସମ୍ରାଟ

*ଚୌଧୁରୀ ବିଷ୍ଣୁପ୍ରସାଦ ନନ୍ଦ*

ନିର୍ବିକଳ୍ପ ସମାଧି ଭିତରେ ଗୁପ୍ତଭାବରେ ବୁଡ଼ି ରହିବାର ସ୍ୱପ୍ନକୁ ଭାଙ୍ଗି ଦେଲେ ଠାକୁର ଶ୍ରୀରାମକୃଷ୍ଣ ଆଉ ସ୍ୱାମୀ ବିବେକାନନ୍ଦଙ୍କୁ ଛାଡ଼ିଦେଲେ ସାରା ଦୁନିଆ ଭିତରକୁ । ଆଖି ବନ୍ଦକରି ଅନ୍ତର ଭିତରେ ବ୍ରହ୍ମାନନ୍ଦ ଉପଭୋଗ କରିବାର ଆନନ୍ଦକୁ ଖୋଲା ଆଖିରେ ସବୁଠାରେ ସବୁଥିରେ ଦେଖିବାର ବାଟ ଦେଖାଇ ଦେଲେ । ଉଦ୍ଦେଶ୍ୟ ତାଙ୍କର ମହାନ୍ , ଯେଉଁ ମହାର୍ଘ ସମ୍ପତ୍ତି ସିଏ ସଂଗ୍ରହ କରିଛନ୍ତି, ତାହା ପୃଥିବୀର ସମସ୍ତଙ୍କ ପାଖରେ ପହଞ୍ଚି ଯାଉ । ବ୍ରହ୍ମଜ୍ଞାନୀ ବିବେକାନନ୍ଦଙ୍କୁ ଗୋଟାଏ ଶାନ୍ତ ବେଷ୍ଟନୀ ଭିତରେ ସୀମାବଦ୍ଧ ନ କରି ତାଙ୍କ ହୃଦୟରେ ଜାଳିଦେଲେ ପ୍ରେମର ନିଆଁ । ଅସାଧାରଣକୁ ଖୋଲି ଧରିଲେ ସାଧାରଣଙ୍କ ପାଖରେ । ପୂଜ୍ୟକୁ କଲେ ପୂଜାରୀ, ସମ୍ରାଟକୁ କରିଦେଲେ ଭିକାରୀ ।

ଲୋକ କଲ୍ୟାଣ କରିବା ଆଗ୍ରହରେ ପାଗଳଙ୍କ ପରି, ବ୍ରହ୍ମଜ୍ଞାନକୁ କାନିରେ ବାନ୍ଧିଦେଇ 'ଯାହା ଇଚ୍ଛା ତାହା' କରେଇ ନେଲେ ଠାକୁର । ତାହାନହେଲେ ବ୍ରହ୍ମଜ୍ଞାନୀ ପୁରୁଷଙ୍କୁ ଏତେ ସହଜରେ ଲୋକଙ୍କ ଘରେ ଘରେ, ସଭା-ସମିତିରେ, ଜନ ସାଧାରଣଙ୍କ ସାଂସାରିକ ଚିନ୍ତାରେ ଏମିତି ବ୍ୟସ୍ତ ହୋଇପଡ଼ିବା ଦେଖାଯାଆନ୍ତି କି ? ଏହା କ'ଣ 'ଯାହା ଇଚ୍ଛା ତାହା' ହେବା ପରି କଥାଟିଏ ନୁହେଁ କି ?

ବିବେକାନନ୍ଦଙ୍କ ସମାଜ ତନ୍ତ୍ର ବ୍ରହ୍ମଜ୍ଞାନର ଗୋଟିଏ ସାମାଜିକ ରୂପ । ଏଥିରେ ରାଜନୀତି ନାହିଁ କି ଅର୍ଥନୀତି ନାହିଁ, ଅଛି କେବଳ ମର୍ମନୀତି, ଧର୍ମନୀତି, ଆତ୍ମନୀତି ଏବଂ ମୋକ୍ଷନୀତି । ଈଶ୍ୱରପ୍ରେମ ବୋହି ନେବାର ଇଏ ମଧ୍ୟ ଗୋଟିଏ ଭଙ୍ଗୀ । ଏହା ହେଉଛି ଠାକୁରଙ୍କର ଆଧୁନିକତା, ଶୃଙ୍ଖଳା ସାଧକଟିଏ ନହବାର ନିଦର୍ଶନ ।

ବିବେକାନନ୍ଦଙ୍କ ସମାଜ ଦର୍ଶନରେ ବ୍ୟଷ୍ଟି ସମଷ୍ଟି, ସବୁ ସମସ୍ୟା ସମାଧାନରେ ଭିତ୍ତି ସ୍ଥାପନ ହୋଇଛି ଜୀବ-ଶିବତ୍ୱ ଉପରେ । ତେଣୁ ଅରଣ୍ୟର ବେଦାନ୍ତକୁ ଲୋକାଳୟ ଭିତରକୁ ଟାଣି ଆଣିଲେ ସ୍ୱଚ୍ଛ ସଲୀଳ ଅଳକାନନ୍ଦାପରି । ପୂର୍ବାପୂର୍ବ ସିଦ୍ଧାନ୍ତର ମୂଳାଧାର, ପ୍ରାଣାନ୍ତକ ବେଦାନ୍ତକୁ ଗଢ଼ି ତୋଳିଲେ ସୁସ୍ୱାଦୁ ସଂଜୀବନୀ ସୁଧା ପରି ।

'ସବୁ ଶକ୍ତି ଭରିରହିଛି ତୁମରି ଭିତରେ' । ସବୁର ସମାଧାନ ମଧ୍ୟ ସେହି ଶକ୍ତି ଭିତରେ । ଆଉ ସେହି ଶକ୍ତି ମଧ୍ୟ ତୁମ ନିଜର, ନିଜସ୍ୱ ସାରା ବ୍ରହ୍ମାଣ୍ଡଟା ଖଣ୍ଡଖଣ୍ଡ ହୋଇ ଚୂରମାର୍ ହୋଇଗଲେ ସୁଦ୍ଧା ସେ ଶକ୍ତିକୁ ତୁମ ଭିତରୁ କେହି ଅଲଗା କରି ପାରିବ ନାହିଁ । କାରଣ ଏ ବ୍ରହ୍ମାଣ୍ଡଟା କେବଳ ଶକ୍ତିର ନାଟକ । କାହିଁକି କାନ୍ଦୁଛ ? ଋହିଁ ଦେଖ, ଉଠି ଠିଆ ହୁଅ, ଆକାଶ କମ୍ପେଇ ବଜ୍ର ନିର୍ଘୋଷ କଣ୍ଠରେ କୁହ ଉତ୍ତିଷତ, ଜାଗ୍ରତ, ପାପ୍ୟ, ବରାନ୍ନିବୋଧତ ଉଠ, ଜାଗ; ଚରୈବେତି, ଚରୈବେତି ।

କ୍ଲୈବ୍ୟଂ ମା ସ୍ମ ଗମଃ ପାର୍ଥ ! ନୈତତ୍ତ୍ୱୟ୍ୟୁପପଦ୍ୟତେ
କ୍ଷୁଦ୍ରଂ ହୃଦୟଦୌର୍ବଲ୍ୟଂ ତ୍ୟକ୍ତ୍ୱୋତ୍ତିଷ୍ଠ ପରନ୍ତପ ॥

ଏହା କ'ଣ ତୁମକୁ ସାଜେ ? ତୁମେ ସର୍ବଶକ୍ତିଧର ହୋଇ ତୁମର ଏ କ୍ଲୀବତ୍ୱ କ'ଣ ପାଇଁ ?

ଛିଣ୍ଡେଇ ଫିଙ୍ଗିଦିଅ ଏ କ୍ଳୀବତାକୁ, ଏ ଦୁର୍ବଳତାକୁ । ବୀର ତୁମେ, ହୁଅ ଶତ୍ରୁଜୟୀ, ବାହାରେ, ଭିତରେ ସବୁଠାରେ । ପିଞ୍ଜରାବଦ୍ଧ କେଶରୀ, ପିଞ୍ଜରା ଭାଙ୍ଗି ବାହାରି ପଡ ମହା ଅରଣ୍ୟ ଭିତରକୁ- ଝାମ୍ପିପଡ ରଣକ୍ଷେତ୍ରକୁ ବାହାରି ଆସ ଅଜ୍ଞାନ କାରାକକ୍ଷର ଦ୍ୱାର ଭାଙ୍ଗି ଆତ୍ମ ଅନୁଭୂତିରେ ମହା ଆନନ୍ଦ ବଳୟକୁ । ଏହି ମୁକ୍ତିର ଆହ୍ୱାନଟି ସମସ୍ତ ଜଗତର ଚେତନାକୁ ଜାଗ୍ରତ କରିଦେବାପରି । ଭଗବତ ପ୍ରେମର ଶ୍ରେଷ୍ଠ ପ୍ରକାଶ ଆଉ କ'ଣ ହୋଇପାରେ ? ସେଇଥି ପାଇଁ ତ ଈଶ୍ୱରପ୍ରେମରୁ ଏହି ଉତ୍କୃଷ୍ଟ ଧାରାଟିକୁ ସମସ୍ତଙ୍କ ଭିତରେ ବେଦାନ୍ତର ଚରମ ବାଣୀ ବୋଲି ପ୍ରଚାର କରିଦେଇଗଲେ ।

ସ୍ୱାମୀ ବିବେକାନନ୍ଦଙ୍କର ସେହି ମହିମାମୟବାଣୀ ଉପରେ, ପୂଜ୍ୟପାଦ ହରିମହାରାଜ କୁହନ୍ତି- 'ସ୍ୱାମୀଜୀଙ୍କର କଥା ପଦକରେ ମଲାମଣିଷ ମଧ୍ୟ ଉଠିବସିବ । ତାଙ୍କ ସେହି କଥାରେ ରହିଛି ସଂଜୀବନୀ ଶକ୍ତି । ତାଙ୍କ ବାଣୀ ଶୁଣିଲେ ଦେହମନ ପ୍ରାଣରେ ଗୋଟାଏ ନୂଆ ଶକ୍ତି ସଂଚରିତ ହୋଇଉଠେ ।'

ଭାରତର ଆଧୁନିକ ଇତିହାସରେ ସ୍ୱାମୀଜୀଙ୍କ ବାଣୀ ହିଁ ଶକ୍ତି ଜାଗରଣର ପ୍ରକୃତ ପ୍ରମାଣ ।

ତାଙ୍କ କଥାଗୁଡିକରେ ଏତେ ଶକ୍ତି ଆସିଲା କେଉଁଠାରୁ ? ଏହି ଯେଉଁ ଶେଷ ରୋଗଶଯ୍ୟାରେ ଶୋଇ.... "ଆଜି ଚଡେ ସବୁ ଦେଇ ଫକିର ହୋଇ ବାଣୀ କହିଥିଲେ... ।" ଏହି ସତ୍ୟଟି ଭିତରେ ସ୍ୱାମୀ ବିବେକାନନ୍ଦଙ୍କ ବାଣୀ ସବୁ ଶ୍ରୀ ରାମକୃଷ୍ଣଙ୍କର ପୁନରାବିର୍ଭାବ, ଶବ୍ଦଶକ୍ତି ରୂପରେ ପ୍ରାଣ ପ୍ରକାଶ ଆଉ ପ୍ରେମର ସୁଡୁଲି ।

ପୃଥିବୀର ସବୁ ଐଶ୍ୱର୍ଯ୍ୟ ଯଦି ଗୋଟିଏ ଲୋକ ଦେହରେ ଠୁଳ ହୋଇଯା'ନ୍ତା । ତେବେ ବି ତାର କାମନା, ବାସନା, ଅଭାବ-ଅସୁବିଧା କେବେବି କମି ଯାଆନ୍ତା ନାହିଁ । କିନ୍ତୁ ମଣିଷର ଦେହମନ ଉଡାଳରେ ଯିଏ ଲୁଚି ରହିଛନ୍ତି, ବ୍ୟଷ୍ଟି ଭିତରେ ତାଙ୍କୁ ଯଦି ଧରି ହୁଅନ୍ତା, ତାହାର ଅଭାବ ଆଉ କିଛି ରୁହନ୍ତା ନାହିଁ । କେତେ ସହଜ ଆଉ ସରଳ ଏହି ସମାଧାନଟି । କେତେ ବୁଲେଇ ବୁଲେଇ ଏହି କଥାଟିକୁ ଆମେ କହୁଛେ । ଭାରତର ଶାଶ୍ୱତ ବାଣୀଟି କିନ୍ତୁ ସାମ୍ରାଜ୍ୟ ଲାଭପାଇଁ ନୁହେଁ-ସ୍ୱରାଜ୍ୟ ଲାଭ ପାଇଁ ସ୍ୱରାଜ୍ୟ ଲାଭର ବାଟଟି ଯିଏ ଦେଇଛନ୍ତି, ସିଏ ସାମାନ୍ୟ ଦାତାଠାରୁ ବଡ ଉପକାରୀ । ସେହି କୌଶଳଟିକୁ ବିବେକାନନ୍ଦଙ୍କ ମାଧ୍ୟମରେ ଘରେ ଘରେ ପହୁଞ୍ଚାଇ ଦେଇଛନ୍ତି ଶ୍ରୀ ରାମକୃଷ୍ଣ, ଆରେ, ତୁମ ଦ୍ୱାରକୁ କିଏ ଆସିଛି, ଥରେ ଚାହିଁ ଦେଖରେ, ପାଇଯିବା ଅଧିକାର ବାଦର ନିୟମ ବେନିୟମ ସବୁ ହଟେଇ ଦେଇ ସବୁ ଶାସ୍ତ୍ରର ସବୁ ବେଦାନ୍ତର ସାର କଥା, ସମସ୍ତଙ୍କ ଭିତରେ ଭରିଦେଲେ । ସେଇଥି ପାଇଁ ତ ସିଏ ପରମଦୟାଳୁ । ଆଜିର ଆଧୁନିକ ଯୁଗରେ ପୃଥିବୀରେ ସବୁ ମଣିଷଙ୍କର ଏତେ ଉପକାର ଆଉ କିଏ କରିଛି ।

ସ୍ୱା- କେ.ସି.ସାହୁ , ପ୍ଲ-୪୬୯୮
ଆଦିମାତା କଲୋନୀ, ଭୁବନେଶ୍ୱର - ୦୭
ମୋ-୯୪୩୯୮୩୧୩୩୭



# କଳ୍ପତରୁଙ୍କ ସେବାଦର୍ଶନ

*ଶ୍ରୀ ପର୍ଶୁରାମ ଦ୍ୱିବେଦୀ*

ଠାକୁର ଶ୍ରୀ ରାମକୃଷ୍ଣ ପରମହଂସ ଦେବ ତାଙ୍କର ସନ୍ନ୍ୟାସୀ ଶିଷ୍ୟମାନଙ୍କୁ ଜ୍ଞାନ ବୈରାଗ୍ୟ ଓ ଭକ୍ତିର ମହତ୍ତ୍ୱ ଶିକ୍ଷାଦେଇ ସନ୍ନ୍ୟାସ ଜୀବନଯାପନ କରି ଈଶ୍ୱର ଉପଲବ୍ଧିର ଓ ସର୍ବ ଶେଷରେ ଈଶ୍ୱର ଦର୍ଶନର ବାଟ ଦେଖାଇ ଦେଇଥିଲେ । ହେଲେ ତାଙ୍କର ଗୃହୀ ଶିଷ୍ୟ ଓ ଅନୁରାଗୀମାନଙ୍କୁ ନିଜେ କଳ୍ପତରୁ ହୋଇ ମନଇଚ୍ଛା ବରନେଇ ଯିବାର ସୁଯୋଗ ଦେଇଥିଲେ ଯାହାକି ସାଧକ ସନ୍ନ୍ୟାସୀ ଶିଷ୍ୟମାନଙ୍କ ପାଇଁ ଦୁଃଷ୍ପ୍ରାପ୍ୟ ଥିଲା । ତୃତୀୟ ବରଦାନଟି ଥିଲା ଉଭୟ ଗୃହୀ ଓ ସନ୍ନ୍ୟାସୀ ଭକ୍ତମାନଙ୍କ ପ୍ରତି । ତାହାଥିଲା ସେବାଦର୍ଶ । କେବଳ ନିଜପାଇଁ କର୍ମ ନକରି ଫଳାକାଙ୍‌କ୍ଷା ତ୍ୟାଗକରି ପରାର୍ଥେ ଯେଉଁ କର୍ମ କରାଯାଏ ତାହା ଧର୍ମରେ ପରିଣତ ହୋଇ ମୋକ୍ଷର ଦ୍ୱାର ଉନ୍ମୋଚନ କରେ । ଘରେ ନିଜ ଖାଇବା ପାଇଁ ପରିବା କାଟିବା ଓ ବେସର ବାଟିବା କର୍ମ ନାମରେ ଅବହିତ ହେଉଥିବା ବେଳେ ମଠରେ ମନ୍ଦିରରେ ବା ସାମୂହିକ ଯାଗ, ଯଜ୍ଞାଦିରେ ପରପାଇଁ, ସମୂହ ପାଇଁ ସେବା ମନୋବୃତ୍ତିରେ କରାଯାଉଥିବା ସେହି କର୍ମଗୁଡ଼ିକ ଧର୍ମରେ ପରଣତ ହୋଇଯାଏ ଓ କର୍ମଫଳରେ ଆଶା ବା ଆକାଙ୍‌କ୍ଷା ରହିତ ହେବା ଯୋଗୁଁ ତାହା ମୋକ୍ଷର ମାର୍ଗ ବା ମୁକ୍ତିର ମାର୍ଗ ହୋଇଯାଏ । ଏହାହିଁ ଠାକୁର ଶ୍ରୀରାମକୃଷ୍ଣ ପରମହଂସ ଦେବଙ୍କର ଶେଷ ଓ ଶ୍ରେଷ୍ଠ ବେଦାନ୍ତିକ ଶିକ୍ଷା । ଶ୍ରୀମଦ୍ ଭଗବତ୍ ଗୀତାର କର୍ମଯୋଗର ତାହାହିଁ ଶେଷ ନିଃଷ୍କର୍ଷ । କଥାଟି ଏତିକିରେ ସରିନାହିଁ । ତାକୁ ଆଉ କେତେପାଦ ଆଗେଇ ଦେବାପାଇଁ ଦିନେ ଚୈତନ୍ୟ ଭାଗବତ ପାଠ ସମୟରେ "ନାମେରୁଚି ଜୀବେଦୟା" କଥାଟି ଶୁଣି ଠାକୁରେ ଚମକି ପଡି କହିଉଠିଲେ । ତୁମ କିଏରେ ଜୀବକୁ ଦୟା କରିବାକୁ ? ସଂଶୋଧନ କରି କହିଲେ "ନାମେରୁଚି-ଜୀବେସେବା" ସେତିକିରେ କଥାଟି ନ ଅଟକି ସେବା କିପରି ହେବା ଦରକାର ତାକୁ ପରିସ୍ଫୁଟ କରିବାକୁ କହିଲେ "ଶିବଜ୍ଞାନେ ଜୀବସେବା" । ଶିବଙ୍କୁ ଯେପରି ଶୌଚ, ପବିତ୍ର, ଦେବଜ୍ଞାନରେ ଭକ୍ତି ସହକାରେ ପୂଜା କରାଯାଏ ଠିକ୍ ସେହିପରି ସେବାକୁ ପବିତ୍ର, ସଭକ୍ତି ଓ ଦେବଜ୍ଞାନରେ କଲେ ହିଁ ଜୀବଜ୍ଞାନେ ଶିବ ସେବା ସମ୍ଭବ ହୁଏ । ଭିକାରୀକୁ ଦୂରରୁ ଟଙ୍କାଟିଏ ଫିଙ୍ଗିଦେଇ ରୋଗୀର ମୁହଁରେ ଔଷଧ ବଟିକାଟି ପୂରାଇଦେଇ, ଦାଣ୍ଡରେ ପତ୍ରପକାଇ ମୁଠାଏ ଖାଦ୍ୟ କୁଢ଼ାଇ ଦେଇ ସେବା କରାଯାଏ ନା, ଏସବୁ କାମରେ ମନ, ମୂନ, ଚୈତନ୍ୟ ଓ ଶିବଜ୍ଞାନ ରଖି ପାରିଲେ ସେସବୁ ସେବା ତୁମର ପୂଜାରେ ପରିଣତ ହୋଇଯାଇ ଅମୃତ ଫଳଦିଏ । ତୁମର ଫଳ ଆଶା ନଥିଲେବି 'ଦେବା ନେବା' ନ୍ୟାୟରେ ଅମୃତ ମୟ ଫଳ ମିଳିବାଟା ସୁନିଶ୍ଚିତ । ଏଥିପାଇଁ ଦରକାର ମନର ପରିବର୍ତ୍ତନ, ସାଧନା ଓ ଗୁରୁଉପଦେଶ । ଠାକୁରଙ୍କ ବାଣୀକୁ ଯିଏ ଠିକ୍ ଭାବେ ଶୁଣିଛି ଓ ପାଳନ କରିଛି ସିଏ ସେହି ଅମୃତଫଳର ଅଧିକାରୀ ହୋଇଛି ।

ସ୍ୱାମୀ ବିବେକାନନ୍ଦ ଯେ, କି ଠାକୁର ଶ୍ରୀରାମକୃଷ୍ଣ ପରମହଂସଙ୍କର ସବୁଠାରୁ ପ୍ରିୟ ଶିଷ୍ୟଥିଲେ ସେ ତାଙ୍କୁ ମୁକ୍ତିର ମାର୍ଗ ନଦେଖାଇ; ବରଂ ବାରଣ କରି ତାଙ୍କୁ ସେବା ମାର୍ଗ ନିର୍ଦ୍ଦେଶ କରିଥିଲେ । ଯାହାର

ଫଳଶ୍ରୁତି ହେଉଛି ସାରାବିଶ୍ୱରେ ବ୍ୟାପ୍ତ 'ରାମକୃଷ୍ଣ ମିଶନ' । ଏହି ମିଶନର ଲକ୍ଷ୍ୟ ହେଉଛି "ଆତ୍ମନଂହିତାୟଚ ଜଗତ୍ ହିତାୟ" । ଜଗତର ହିତ ବା ସେବା ପାଇଁ ନିଜକୁ ବଞ୍ଚାଇରଖ ବା ନିଜ କାମ କର । ନିଜେ ଭଲରେ ରହିବାର ଉଦ୍ଦେଶ୍ୟ ହେଉଛି ଅପରର ସେବା ସୁଷ୍ଠୁରୂପେ ସମ୍ପାଦନ କରିବା ।

ଚିର ସନ୍ନ୍ୟାସୀ ସ୍ୱର୍ଗୀୟ ବିଶ୍ୱନାଥ ମହାରାଜ ଯାହାଙ୍କର ସନ୍ନ୍ୟାସୀ ନାମଥିଲ 'ସ୍ୱାମୀ ଭକ୍ତ୍ୟାନନ୍ଦ' ସେ ଏହି ଲେଖକକୁ କେତେବାର ଟିକାତାଳ ସ୍ଥିତ ଶ୍ରୀରାମକୃଷ୍ଣ ସେବାଶ୍ରମକୁ ନେଇଯାଇ ଖୁବ୍ କ୍ଷୁଦ୍ର ପରିସରରେ ସେଠାରେ ସ୍ୱାମୀ ଭାଗବତାନନ୍ଦ ପୁରୀଙ୍କ ପ୍ରଚେଷ୍ଟାରେ ଗଢି ଉଠିଥିବା ସେବା କେନ୍ଦ୍ରକୁ ଦେଖାଇଥିଲେ ଓ ପରିଚିତ କରାଇଦେଇ ମୋତେ ଧନ୍ୟ କରିଦେଇଥିଲେ । ସେହି କ୍ଷୁଦ୍ର ବୀଜ ଆଜି ଅଙ୍କୁରୀ, ପଲ୍ଲବିତ ଓ ଫଳପୁଷ୍ପ ବିମଣ୍ଡିତ ହୋଇ ସେ ଅଞ୍ଚଳରେ ଶୋଭା ବର୍ଦ୍ଧନ କରୁଅଛି ଓ ଆହୁରି ବର୍ଦ୍ଧନମୁଖୀ ସ୍ୱାମୀ ଭାଗବତାନନ୍ଦ ପୁରୀ ଛାତ୍ରାବାସ, ବିଦ୍ୟାଳୟ, ମହାବିଦ୍ୟାଳୟ, ପାଠାଗାର ଇତ୍ୟାଦି କରିସାରି ଏବେ ଭାଗବତଟୁଙ୍ଗୀ ଆନ୍ଦୋଳନର ପୁରୋଧା ହୋଇଛନ୍ତି । ଏସବୁ ସେହି ପରମକାରୁଣିକ ଠାକୁର ଶ୍ରୀରାମକୃଷ୍ଣ ପରମହଂସ ଦେବଙ୍କ କଳ୍ପତରୁ ଦୃଷ୍ଟି ବ୍ୟତୀତ ଅନ୍ୟ କିଛି ନୁହେଁ । ଯେଉଁ ଦେବପ୍ରାଣ ଯୁବକମାନେ ସେହିଠାରୁ ପ୍ରେରଣାପାଇ ସେହି ଅନୁଷ୍ଠାନର ଉତ୍ତରୋତ୍ତର ଉନ୍ନତିପାଇଁ ଲାଗିପଡିଛନ୍ତି ସେମାନଙ୍କ ଉପରେ ଠାକୁରଙ୍କର ନିଶ୍ଚିତ କୃପାଦୃଷ୍ଟି ରହିଅଛି ଓ ରହିବ ମଧ୍ୟ । ଭାଗବତାନନ୍ଦ ପୁରୀ ନିଜ ବେଶପୋଷକ ବା ଚଳିଚଳନ, ଖାଦ୍ୟପେୟ ବସବାସର ଉନ୍ନତିକୁ ଗୁରୁତ୍ୱ ନ ଦେଇ ସେ ଅଞ୍ଚଳରେ ବହୁ ଶିଶୁ, କିଶୋର, ଯୁବକ ଓ ଜନସାଧାରଣଙ୍କର ଅଭୂତପୂର୍ବ ଉନ୍ନତି ସାଧନର କାରଣ ହୋଇଛନ୍ତି । ଅଧିକ ଜନସହ ଯୋଗ ମିଳିଲେ ସେହି ଆଶ୍ରମ ଶିବଜ୍ଞାନରେ ଅଧିକ ଜୀବସେବା, ଧର୍ମପଥରେ ଅବଶ୍ୟ ଆଗେଇଯିବ, ଏଥିରେ ତିଳେମାତ୍ର ସନ୍ଦେହର ଅବକାଶ ନାହିଁ; କାରଣ ଯାହା କ୍ଷୁଦ୍ର ବୀଜରୁ ବୃକ୍ଷଟିଏ ହେଲାଣି ତାହା ଫଳଫୁଲ ବିମଣ୍ଡିତ ହୋଇ ସେହି ଦୀନଜନର ଠାକୁର ଶ୍ରୀରାମକୃଷ୍ଣ ପରମହଂସ ଦେବଙ୍କର ଦୟାରୁ କାୟା ଓ ବଂଶବିସ୍ତାର କରିବ ।

ବିମାନଘାଟୀ ଅଞ୍ଚଳ, ଭୁବନେଶ୍ୱର - ୭୫୧୦୨୦
ମୋ - ୯୪୩୭୭୬୪୦୮୮







# ଭାରତ ଭାବନା ଓ ସ୍ୱାମୀ ବିବେକାନନ୍ଦ

*ଡକ୍ଟର ଶରତ ଚନ୍ଦ୍ର ରଥ*

ଭାରତବର୍ଷକୁ ମାଟି, ଗୋଡି ଓ ପଥରରେ ଗଢା ଏକ ଭୂଖଣ୍ଡ ମାତ୍ର ବୋଲି ନଭାବି ଜୀବନ୍ତ ଦେବୀ ଭାବରେ ଯେଉଁମାନେ ବିଚାର କରିଥିଲେ, ସେମାନଙ୍କ ମଧ୍ୟରେ ସ୍ୱାମୀ ବିବେକାନନ୍ଦ ଅନ୍ୟତମ । ତାଙ୍କର ଜନ୍ମ ହୋଇଥିଲା ୧୮୬୩ ମସିହା ଜାନୁୟାରୀ ମାସ ୧୨ତାରିଖରେ କଲିକତା ଅନ୍ତର୍ଗତ ଶିମୁଳିଆ ଗ୍ରାମରେ । ତାଙ୍କ ପିତାଙ୍କ ନାମ ଥିଲା ଶ୍ରୀଯୁକ୍ତ ବିଶ୍ୱନାଥ ଦତ୍ତ ଓ ମାତାଙ୍କ ନାମ ଥିଲା ଶ୍ରୀମତୀ ଭୁବନେଶ୍ୱରୀ ଦେବୀ ।

ଆଦ୍ୟଯୌବନରୁ ଜୀବନର ଶେଷ ପର୍ଯ୍ୟନ୍ତ ପ୍ରାଣଭରି ସେ ଭଲ ପାଇଥିଲେ ଭାରତବର୍ଷକୁ । ଏପରି ଆତ୍ମୀୟତା ଅତ୍ୟନ୍ତ ବିରଳ କହିଲେ ଅତ୍ୟୁକ୍ତି ହେବ ନାହିଁ । ଭାରତ ଚେତନା ସହ ଏକାତ୍ମ ହୋଇ ସେ ହୋଇଯାଇଥିଲେ ରକ୍ତମାଂସରେ ଗଢା ଭାରତ ପ୍ରତିମା, ତାଙ୍କର ସମସ୍ତ ଭାବନା, ଅବେଗ, ପ୍ରାଣସ୍ପନ୍ଦନର କେନ୍ଦ୍ରବିନ୍ଦୁ ଥିଲା ଭାରତବର୍ଷ ସେ ଥରେ କହିଥିଲେ-

"ମୁଁ ହେଉଛି ଭାରତବର୍ଷର ଘନୀଭୂତ ରୂପ" ଭାରତର ମାଟି ତାଙ୍କ ପାଇଁ ଥିଲା ସ୍ୱର୍ଗାଦପି ଗରୀୟସୀ ।

ବିଶ୍ୱଦରବାରରେ ଭାରତର ସ୍ଥାନ ନିରୂପଣ କରିଦେଲେ ସ୍ୱାମୀ ବିବେକାନନ୍ଦ । ସେ ସଦର୍ପରେ ଉଦ୍‌ଘୋଷଣା କଲେ, ଭାରତୀୟ ସଂସ୍କୃତିର ମହତ୍ତ୍ୱକୁ ଚିକାଗୋଠାରେ ଉପସ୍ଥିତ ପ୍ରାୟ ସାତ ହଜାର ଶ୍ରୋତାଙ୍କ ସମ୍ମୁଖରେ । ତାଙ୍କର ପ୍ରଥମ ବାକ୍ୟରେ ଫୁଟି ଉଠିଲା ବିଶ୍ୱଭ୍ରାତୃତ୍ୱର ଲଳିତ ରାଗିଣୀ । ଏମାଟିର ସିଂହ ଶିଶୁକଣ୍ଠରେ ପ୍ରତିଧ୍ୱନିତ ହେଲା, 'ଶୃଣ୍ୱନ୍ତୁ ବିଶ୍ୱେ ଅମୃତସ୍ୟ ପୁତ୍ରାଃ'ର ଅନ୍ୟରୂପ 'ଆମେରିକାବାସୀ ଭଉଣୀ ଓ ଭାଇମାନେ' । ସେ ଶବ୍ଦ ଉଚ୍ଚାରଣରେ ଆନ୍ତରିକତାର ଯେଉଁ ଯାଦୁକରୀ ସ୍ପର୍ଶ ଥିଲା, ତାହା ଭାଷାରେ ଅବର୍ଣ୍ଣନୀୟ । ଉପସ୍ଥିତ ଜନତାର ହୃଦୟରେ ଭରିଗଲା ଅପୂର୍ବ ପୁଲକ । ପ୍ରାୟ ଦୁଇ ମିନିଟ ଧରି କରତାଳିରେ ପ୍ରକମ୍ପିତ ହେଲା ସଭାସ୍ଥଳ । ସତେ ଅବା ତାହାଥିଲା ଭାରତବର୍ଷର ଜୟଗାନ ପାଇଁ ପ୍ରୀତି ପୁଲକିତ ସହର୍ଷ ମୂର୍ଚ୍ଛନା ।

ପ୍ରାଚ୍ୟ ଓ ପାଶ୍ଚାତ୍ୟ ସଂସ୍କୃତି ମଧ୍ୟରେ ସମନ୍ୱୟ ଚେତନାର ବାର୍ତ୍ତା ପ୍ରଚାର କଲେ ସ୍ୱାମୀଜୀ ବାର୍ତ୍ତା ନୁହେଁ, ତାହାଥିଲା ପାଶ୍ଚାତ୍ୟବାସୀଙ୍କ ହୃଦୟରେ ଶତ ପ୍ରତିଧ୍ୱନି ତୋଳୁଥିବା ମନମୋହିନୀ ମଧୁର ସଂଗୀତ । ମତ ଅନୁସାରେ ପଥ, ଯେତେମତ ସେତେ ପଥ, ଏବଂ ସବୁ ପଥର ମିଳନ ସ୍ଥଳ ଏକ ଓ ଅଭିନ୍ନ, ଏକଥା ବୁଝାଇଦେଲେ ସ୍ୱାମୀଜୀ ବିଶ୍ୱବାସୀଙ୍କୁ ଏକଇ ଭଗବାନ, ଭିନ୍ନ ମତ ଅନୁସାରେ କେବଳ ତାଙ୍କ ନାମଭିନ୍ନ । ଭିନ୍ନ ମତ ହିଁ ଭିନ୍ନ ପଥ । ପଥ ନେଇ ଅର୍ଥାତ ମତ ନେଇ ପରସ୍ପର ମଧ୍ୟରେ କଳହ ସଂପୂର୍ଣ୍ଣ ନିରର୍ଥକ ବୋଲି ସେ ଚିକାଗୋଠାରେ ଘୋଷଣା କଲେ । ମୁହୂର୍ତ୍ତକ ପାଇଁ ହେଲେ ମଧ୍ୟ ବିଶ୍ୱର ଧର୍ମକଳହ ସ୍ତବ୍ଧ ହୋଇଗଲା, ବିଶ୍ୱବାସୀ ବିସ୍ଫାରିତ ନେତ୍ରରେ ଉତକର୍ଣ୍ଣ ହୋଇ ଶୁଣିଲେ ଏଇ ମନ୍ତ୍ରମୟୀ ବାଣୀ କହନ୍ତି ମୂର୍ଚ୍ଛନାକୁ, ସତେ ଅବା କିଏ ଦେବଦୂତ ସଂଜୀବନୀ ସୁଧା ଆଣି ବରଷିଗଲା ମର୍ତ୍ତ୍ୟର ମାଟିରେ । କ୍ଷଣକ ପାଇଁ ହେଲେ ମଧ୍ୟ ଭାରତୀୟ ପ୍ରଶସ୍ତ ଧାର୍ମିକ ଅନୁଚିନ୍ତାର ବିଜୟ ଧ୍ୱଜା ବିଶ୍ୱ ଆକାଶରେ ଉତ୍ତୋଳିତ ହେଲା । "ଏକଂସଦ୍‌ବିପ୍ରାଃ

